ଭାନୁଜୀ ରାଓଙ୍କ କାବ୍ୟକୃତି

# ନଈ ଆର ପାରି

କେନ୍ଦ୍ର ସାହିତ୍ୟ ଆକାଦେମୀ-ପୁରସ୍କାରପ୍ରାପ୍ତ


ପ୍ରକାଶକ :

କାହାଣୀ ପ୍ରକାଶନୀ

କଲ୍ୟାଣୀ ନଗର, କଟକ-୧୩



ପ୍ରଚ୍ଛଦପଟ :

ଅସିତ ମୁଖାର୍ଜୀ



[illegible]

ଶୋଭନ ସଂସ୍କରଣ :

୧୯୯୪



ମୁଦ୍ରଣ :

ରେନେସାଁ ପ୍ରିଣ୍ଟର୍ସ

ନୂଆବଜାର, କଟକ-୪



ମୂଲ୍ୟ :

ଟ ୨୫.୦୦

[ପଚିଶ ଟଙ୍କା ମାତ୍ର]



ଲେଖକଙ୍କ ଦ୍ୱାରା ସର୍ବସ୍ୱତ୍ୱ ସଂରକ୍ଷିତ


## NAI ARAPARI

*A collection of poems*

*by* **Bhanujee Rao**


Publisher :

**KAHANI PRAKASHANI**

Kalyaninagar,

Cuttack-753013

1994

Price :

**Rs. 25.00**

**(Rupees Twentyfive Only)**



All the rights are reserved by the author

Digitized by PPRACHIN, SOA

ଗୋଟିଏ ଆରମଚୌକି,
ମୁଁ ଓ ମୋ ନିଃସଂଗ ଛାଇକୁ ।

Digitized by PPRACHIN, SOA

# ପ୍ରକାଶକୀୟ

'ନଈ ଆରପାରି' କବି ଭନୁଜୀ ଗଓଙ୍କର ଦ୍ୱିତୀୟ କବିତା ଗ୍ରନ୍ଥ । ଏ ଗ୍ରନ୍ଥ ପାଇଁ ସେ ପାଇଥିଲେ ୧୯୮୯ ମସିହାର କେନ୍ଦ୍ର ସାହିତ୍ୟ ଆକାଦେମୀ ପୁରସ୍କାର ।

ପ୍ରଥମେ ଏହା ପ୍ରକାଶ ପାଇଥିଲା ୧୯୮୬ ମସିହାରେ । ମାତ୍ର ଭୁବନେଶ୍ୱରର ଯେଉଁ ସଂସ୍ଥା ବା ସମିତି ସେତେବେଳେ ଏହାର ପ୍ରକାଶକ ଥିଲେ, ତାହା ଅବଶ୍ୟ କେତେଜଣ ଲେଖକଙ୍କୁ ନେଇ ଏକ ସମବାୟ ସମିତି ରୂପେ ଗଠିତ ହୋଇଥିଲେ ହେଁ ପ୍ରକାଶିତ ପୁସ୍ତକଗୁଡ଼ିକର ବିତରଣ ବା ପ୍ରସାରଣ ଦିଗରେ ସେତେଟା ସଯତ୍ନ ଧ୍ୟାନ ଦେଇପାରି ନ ଥିଲେ, ଯେତେଟା ଦେବାର କଥା । ଏହି କାରଣରୁ ହିଁ ପାଠକସମାଜ ପକ୍ଷରେ ବର୍ଷ ବର୍ଷ ଧରି ଦୁଷ୍ପ୍ରାପ୍ୟ ରହି ଆସିଥିଲା ଏ କବିତା-ଗ୍ରନ୍ଥଟି ।

ଆଜି ଦୀର୍ଘ ୮ ବର୍ଷ ପରେ କଟକର ଏକ ସୌଖିନ୍ ପ୍ରକାଶନ ସଂସ୍ଥା 'କାହାଣୀ ପ୍ରକାଶନୀ' ଏହି ପୁସ୍ତକଟିକୁ ପୁନରାୟ ପ୍ରକାଶ କରିବାକୁ ଯାଉଛନ୍ତି । ଆଶା, ପାଠକସମାଜ ଏହି ସୁଯୋଗର ସଦୁପଯୋଗ କରିବେ ନିଶ୍ଚୟ ।

Digitized by PPRACHIN, SOA





Digitized by PPRACHIN, SOA

***

Digitized by PPRACHIN, SOA

## ପ୍ରେମ

ପ୍ରେମ ଏକ ରଢ଼ ନିଆଁ,
ପୋଡ଼ିଦିଏ ସବୁ କିଛି,
ହାତର ପାପୁଲି ଆଉ ଆଖିପତା, ଓଠର ପାଖୁଡ଼ା ।
ପ୍ରଜ୍ୱଳନ୍ତ ମେଘ ଭଳି ଘୋଟିଯାଏ ଦେହର ଆକାଶ,
ଲେଲିହାନ ଜିଭ ଦେଇ ଗ୍ରଟେ ମନ— ଅଇଁଠା ପତର ।

ଶବ୍ଦର ବିହଙ୍ଗସବୁ ଉଡ଼ିବାକୁ ଭୁଲିଯାନ୍ତି,
ଈର୍ଷାର କତୁରୀରେ ପ୍ରେମ କାଟେ ସେମାନଙ୍କ ଡେଣା

Digitized by PPRACHIN, SOA

ପ୍ରେମକୁ ଦେଖିଛ କେବେ,
ଢଳିଲା ଭଙ୍ଗୀରେ ଗୁଞ୍ଜେ ବାବୁରୀ ବାଳକୁ ଛାଟି,
ଭର ଦେଇ ଠିଆ ହୁଏ ଗୋଧୂଳି ଆକାଶ—
ପଞ୍ଜାବୀର ଇମ୍ପ ପକେଟରୁ ଅଳ୍ପ ନଇଁ
କାଢ଼ିଆଣେ ସ୍ତନର ସ୍ତବକ ?

ପ୍ରେମ ନୁହେଁ ଅଶରୀରୀ; ତସ୍କର ସେ, ବିଶ୍ୱାସଘାତକ,
ଆଷାଢ଼ର ନଦୀ ଭଳି ଦମ୍ଭରେ ଫୁଲି ଫୁଲି
ଭାଙ୍ଗିଦିଏ ଛାତିର ବୁରୁଜ ।
ଦୁର୍ଯ୍ୟୋଧନ ଭଳି ହରେ
ଦ୍ରୌପଦୀ ପଣତ—ମୋର ଲଜ ।

ଯାତ୍ରାରେ ରଜା ପାର୍ଟ୍, ଏହା ଥିଲା ମୋର କାରବାର,
ହାତେ ଧରି ଟିଣ ତଲବାର ।
ଛଡ଼ାଇ ନେଲା ମୋଠୁଁ ସବୁ କିଛି, ଜରିର ମୁକୁଟ
ରଖିଗଲା ମୋ ପାଇଁକି ଦେଖିବାକୁ
ପାଣି ଫାଟ ଭୂମିକା ଶୁକୁଟ ।

□ □ □



Digitized by PPRACHIN, SOA

## ସ୍ୱର୍ଗ

ବେଳେବେଳେ ପୃଥିବୀରେ
ନରମ ବର୍ତ୍ତୁଳ ଜହ୍ନ ଉଠେ,
ରଜାପୁଅ ଭୁଲିଯାଏ ଦୀର୍ଘଶ୍ୱାସ ପକାଇବାକୁ,
ଆଉ,
ରଙ୍ଗାଝିଅ ଜଳକେଳି କରୁ କରୁ
ତାର ଛାତିର ଯନ୍ତ୍ରଣା ଜୋଛନାରେ ମେଲି ଦିଏ ।
ସେତେବେଳେ ଜାମୁକୋଳି ସବୁ
ନଈ ପାଣିରେ ଟୁପ୍‌ଟାପ୍ ଝଡ଼ି ପଡ଼ନ୍ତି ପାଚିଲା ସୁଖରେ ।

ବେଳେବେଳେ ପୃଥିବୀରେ ମଳୟ ବହେ,
ଧାନ କ୍ଷେତର ଗଭୀରରେ ଝୁଲା ପକାଏ ପବନ ।
ମୁହାଣରେ ଆରମ୍ଭ ହୁଏ ଉଜାଣି— ଜୁଆର,
ଠିକ୍ ସେତିକିବେଳେ କେଉଟର ଜାଲରେ
ସ୍ୱପ୍ନମାନେ ଚିତଳ ଭଳି ଚହଟନ୍ତି ।
ଏବଂ,
ଶାମୁକା ପେଟରେ ଧରି ଦିଅନ୍ତି ମୁକ୍ତା ।

ବେଳେବେଳେ ଏ ପୃଥିବୀ ଭରିଯାଏ
ଚମ୍ପା ଫୁଲ ମହକରେ,
ଦୂରରେ, ଧବଳ ଅନ୍ଧାରେ ଭସେ
ସାଧବ-ବୋଇତ ।

□ □ □



Digitized by PPRACHIN, SOA

# ଦିନ ଆସେ ଦିନ ଯାଏ

ଥରେ ଥରେ ଦିନ ଆସେ ବର ବେଶରେ, ମଥାରେ ମକୁଟ ଲଗାଇ,
ତା' ସାଙ୍ଗର ବରଯାତ୍ରୀମାନେ ମାଣିଅଁବନ୍ଧି ଧୋତିର କୁଞ୍ଚ ସମ୍ଭାଳୁ ସମ୍ଭାଳୁ
ଖୁବ ଦିମାକରେ ଗଣ୍ଡା ମଝିରେ ପାନପିକ ପିଚ୍ କରି ପକାନ୍ତି,
ବେକର ମଲ୍ଲିହାର ଅଳ୍ପ ଅଳ୍ପ ଦୋହଲୁଥାଏ ସେମାନଙ୍କର ।

ବେଳେ ବେଳେ ଦିନ ଆସେ ତାତାର୍ ଦସ୍ୟୁ ଭଳି ହାତରେ ଖଣ୍ଡା ଧରି,
ଘୋଡ଼ା ଟାପୁର ଧୂଳିରେ ଭରିଯାଏ ପୃଥିବୀ ।
ସେଦିନ ସେ ରକ୍ତାକ୍ତ ପାପୁଲିରେ ନାରୀମାନଙ୍କ ଚିକୁର ସ୍ପର୍ଶ କରେ ।

ଆଉ ଦିନେ ଦିନେ ଯେତେବେଳେ ଅଭିମାନ ଭଳି ଚାରିଆଡ଼େ ଘୋଟିଯାଏ କୁହୁଡ଼ି,
ଦିନ ଆସି ଠିଆ ହୁଏ ରିକ୍ତ ବିଧବା ପରି
ଲଙ୍ଗଳା ହାତରେ ଆଞ୍ଜୁଳାଏ ଦୁଃଖ ଅଜାଡ଼ି ଦେଇ ।

ନଈ ପାଣିରେ ଜହ୍ନର ପଗଡ ବୁଡ଼ିଛି କେତେବେଳୁ
ପେଚ୍ଚ ତାର ଡେଣା ଦେଇ ଅନ୍ଧାରକୁ ଜରିପ୍ କରିଛି ବାରମ୍ବାର,
ପଠାରେ, ଘାସର ଅରମା ଭିତରୁ ଗୋଧି ସାପ ମନ୍ଥର ଭବରେ
ବାହାରି ଆସେ ସୂର୍ଯ୍ୟକୁ ଭେଟିବାକୁ,
ସେତେବେଳେ ଦିନ ଆସେ ଠିକ୍ ଗୋଟାଏ ଲେଙ୍ଗଡ଼ା ଭିକାରୀ ପରି ।
ବାଡ଼ିରେ ଭର ଦେଇ ଆଣ୍ଠେଇ ଆଣ୍ଠେଇ ।

ପୁଣି ଆଉ କେତେବେଳେ କିଶୋରୀର ଓଦାସ୍ତନ ପରି କରୁଣ ଦିନ ଆସେ,
ଯିଏ ପୋଖରୀ ତୁଠରୁ ଲୁଗା ଚୁପୁଡ଼ି ଚୁମୁଡି ଘରକୁ ଫେରୁ ଫେରୁ
ବାଟରୁ ସାଉଁଟି ନିଏ ଗଙ୍ଗଶିଉଳି —
ଯାହାର ସବୁ ପାଖୁଡ଼ାରେ କାକର ।





Digitized by PPRACHIN, SOA

# ହସ୍ତୀ-ଦର୍ଶନ

ନାରୀର ସନ୍ଧାନରେ ସେମାନେ ସବୁ ବାହାରିଲେ ଦିନେ
ଅମୁକ ଅକ୍ଷାଂଶ ଆଉ ଅମୁକ ଦ୍ରାଘିମାରେ ବହୁତ ଖୋଜିଲେ ।
ଜଣେ କହିଲା : ନାରୀ ଦେଖି ନାହଁ ?
ନଦୀ ପରି ଦୁଇ ଜାନୁ,
ଏବଂ, ତା ଦେହରେ ଓଲଟ ଚମ୍ପା ଫୁଟେ,
ତାର ଚିକୁର ଶ୍ରାବଣ ଦିଗନ୍ତ ଭଳି ମାୟାବୀ ଆଉ ଅଳସ ।

ନାରୀର ଓଠ ଓ ସ୍ତନ ସମ୍ପର୍କରେ
ଜଣେ ବିଶେଷଜ୍ଞ କହିଲେ: ବହୁତ ଦୂରରୁ ଏହା ଆକର୍ଷଣ କରେ,
ଏବଂ ପାଖକୁ ଘୋସାରି ଆଣି ପୁରୁଷର ନିଃଶ୍ୱାସକୁ ରୁନ୍ଧିଦିଏ ।

ନାରୀ ଦେହରୁ ସର୍ବସ୍ୱ ଛଡ଼ାଇ ନେଲେ
ତାର ନଗ୍ନତା ଅନ୍ଧାରରେ ଜ୍ୱଳୁଥାଏ ଯେମିତି ମନ୍ଦାର ।
ଶେଷକୁ ଜଣେ ବିଜ୍ଞ ବୁଢ଼ା କାଖ କୁଣ୍ଡାଉ କୁଣ୍ଡାଉ କହିଲେ :
ବୁଝିଲ ହେ, ନାରୀ ହେଲା, ସାଢ଼େ ଚାରି କପ୍ ଅଭିମାନ
ଆଉ ଦେଢ଼ ଲିଟର ଅଶ୍ରୁର ସମାହାର ।

ନାରୀର ଆଖି ସମ୍ବନ୍ଧରେ ଉପମା ସେମାନେ
କିଛି ହେଲେ ଖୋଜି ପାଇଲେ ନାହିଁ,
କାରଣ ସେମାନେ ଥିଲେ ସମସ୍ତେ ଅନ୍ଧ ।

୮, ୮୦



Digitized by PPRACHIN, SOA

## ନୋଟିସ୍

ଆଜି,
ମୋ ଝରକାରେ ଅନେକ ମେଘ,
ଆଉ,
ତୁମ ବଗିଚ୍ଚରେ ଗୋଲପର ପାଖୁଡ଼ାରେ ରକ୍ତ ।
ମୁଁ ପାରୁ ନାହିଁ ଦେଖି ତୁମକୁ,
ତୁମ ଆଖି, ଭ୍ରୂଲତା ଏବଂ ଓଠ ନେଶି ହୋଇ ଯାଉଛି କୁହୁଡ଼ିରେ ।
କିନ୍ତୁ,
ତୁମ ଚୁଡ଼ିର ଶବ୍ଦ ସୁଦୂର ଜଳପ୍ରପାତ ଭଳି ମୋ ଚେତନାରେ ବାଜୁଛି ।



Digitized by PPRACHIN, SOA

ଆମ ବିଚ୍ଛେଦ ଜିରାଫ୍ ପରି ତାର ଦୀର୍ଘ ଗ୍ରୀବା
ବଢ଼ାଇ ଜହ୍ନକୁ ଛୁଇଁବାକୁ ବସିଛି ।
ମନେ ଅଛି,
ସେଇ ଜହ୍ନ, ଯା'ର ହାତ ଧରି ଅପବାଦର ଉପତ୍ୟକା
ପାରିହୋଇ ନିତି
ଘରକୁ ଫେରିଥିଲୁ ଦୁହେଁ ?
ଜାଣ ତୁମେ, ନୀଳ ଆକାଶର ସାମିଆନା ଚିରି
ହଳଦୀ ବସନ୍ତ ଚଢ଼େଇ ଉଡ଼ି ଯାଇଛି ଦୂର ଦିଗ୍‌ବଳୟକୁ ?

ବାଦୁଡ଼ିର ଡେଣା ପରି ବାହାରେ ଅନ୍ଧାର
ଝୁଲୁଛି,
ବଉଳ ଝରି ଝରି ପଡ଼ୁଛି ଘାସରେ -ଯନ୍ତ୍ରଣାରେ ପାଣ୍ଡୁର ।
ଗେନ୍ଥଳ ବିଲେଇଟା ଶୋଇଛି ତୁମରି କୋଳରେ —
ବେଶ୍ ଶୋଇଥାଉ !

ମୁଁ ଭାବୁଛି, କାଲି ଗୋଟିଏ ନୋଟିସ୍ ଟାଙ୍ଗିବି,
ତୁମ ବଗିଚାର ମନ୍ଦାର ଗଛର ଡାଳରେ —
'ଭ୍ରମରଙ୍କ ପ୍ରବେଶ ନିଷେଧ' ।

□□□



Digitized by PPRACHIN, SOA

# ଯଦି କେବେ

ଯଦି କେବେ ଫୁଲର ପାଖୁଡ଼ା,
ଝରିଯାଏ, ଝରି ଝରି ଯାଏ,
ପରାଗ ଟିକକ ଲାଗି
ଯୋଜନ ଯୋଜନ ଦୂର
ବାଲିକୁଦ ଡେଇଁ ଅପନ୍ତରା,
ଆସିଛି ତଥାପି ମୁଁ ତ
ପାରି ହୋଇ ପାହାଡ଼ର ଚୂଡ଼ା ।

ଯଦି କେବେ ଜହ୍ନର ପରତ,
ଉଠୁ ଉଠୁ ମେଘର ଉହାଡ଼,
ଗ୍ରାସ କରେ ବର୍ତ୍ତୁଳ ସୁଷମା,
ଜୋଛନା ଟିକକ ପାଇଁ
ଧାନକ୍ଷେତ, ମଶାଣି, ଟାଙ୍ଗର,
ପ୍ରଦକ୍ଷିଣ କରି କରି
ଖୋଜି ଖୋଜି ନେତ୍ରର ସୀମା,
ନିଶାନ୍ତରେ ପାଇଯିବି ନିଶ୍ଚେ ସେହି ପ୍ରଚ୍ଛନ୍ନ ପ୍ରପାତ ।



Digitized by PPRACHIN, SOA

ଯଦି କେବେ ଲିଭେ ଦୀପ,
ଥରି ଥରି ଲିଭି ଲିଭି ଯାଏ,
ବଗିଚ୍ଚାରେ ଭରିଯାଏ ଅନାବନା ଘାସ,
ମୋ ଡାକର ପ୍ରତିଧ୍ୱନି ଶୁଭୁ ଶୁଭୁ
ନଇ ପଠାଆନ୍ତୁ,
ତୁମେ କଣ ସଜାଡ଼ିବ
ଦଗ୍ଧ ଆଉ ବିବର୍ଣ୍ଣ ସଳିତା,
କିଞ୍ଚିତ ଉତ୍ତାପ ପାଇଁ
ସାତତାଳ ଅନ୍ଧାର ସାଉଁଟି ?
ବୃଥା ଏ ଶ୍ରାବଣ କଣ ଫେରିଯିବ
ଆଉ କେବେ ଫୁଟିବନି ନୀପ ?

ଯଦି କେବେ ଛିଣ୍ଡେ ତାର
ସ୍ତବ୍ଧ ବୀଣା ପଡ଼ିରହେ ଖାଲି,
ମୂର୍ଚ୍ଛନା ତ ଲଗିଥାଏ
ନିଃଶ୍ୱାସରେ ନିଃଶ୍ୱାସରେ
କାନ୍ଦଣାର ରୁଦ୍ଧ ସ୍ୱର ଟେକି—
ପୋଛେ ନାହିଁ ସେ ଅଲିଭ ଗାର ।

ଯଦି କେବେ ହାତ ଥମେ
ଲେଖୁ ଲେଖୁ ଚିଠିର ଖସଡ଼ା,
ସନ୍ଦେହର ଗୋଳି ପାଣି କୂଳ ଖାଏ
ଖସି ପଡ଼େ ସ୍ମୃତିର ଅଚଡ଼ା,
ମନର କବାଟ କିଳି ପାରିବନି, ତଥାପି ଅନ୍ତତଃ
ଅଳ୍ପ ଫାଙ୍କ ରହିଯିବ,
ଲଙ୍ଘିଯିବ ପାହାଚରୁ ପାହାଚକୁ
ଧାର ଧାର ରକ୍ତ ପରି
ଏ ମୋହର, ଏ ତୁମର ପାପ ।

□ □ □



Digitized by PPRACHIN, SOA

## ଶବ୍ଦର ଚକ୍ରବ୍ୟୂହ

ଶବ୍ଦମାନେ ଉଡ଼ିଯାନ୍ତି ଡେଣା ମେଲି ସୁମେରୁ-କୁମେରୁ,
ଶବ୍ଦମାନେ ଭୀଷଣ ତରକା,
ମୁଁ ଏକ ବ୍ୟାଧ ଭଳି ଛକି ଛକି ଉଦ୍ୟତ ଜାଲକୁ
ଯେତେଥର ମେଲିବାକୁ ଯାଏ
ସେମାନେ ରହିଯାନ୍ତି ପଳାତକ ଏବଂ ଅଧରା ।

ଶବ୍ଦମାନେ ମାତିଯାନ୍ତି ଘୋର ମନ୍ତ୍ରଣାରେ,
ଛିଗୁଲନ୍ତି ବାରମ୍ବାର ମୋତେ,
ମୁଁ ଦେଖିଛି କେତେଥର ସେମାନଙ୍କ ପ୍ରଚଣ୍ଡ ବିକ୍ଷୋଭ,
ବିଦ୍ରୋହରେ ଫାଟି ପଡ଼ି ମୋ ଶାନ୍ତିକୁ ବିଘ୍ନିତ କରନ୍ତି ।
ଏବଂ କୌଣସି ସାଲିଶ୍
ମାନିବାକୁ ସେମାନେ ନାରାଜ
ଆନ୍ଦୋଳିତ ହାତରେ ତାଙ୍କର ଭର୍ତ୍ସନାର ଝେଣ୍ଡା ।



Digitized by PPRACHIN, SOA

ଶବ୍ଦମାନେ ଭୀଷଣ ଗ୍ଲକ,
ସେମାନେ ଜାଣିଛନ୍ତି କେତେବେଳେ ମୁଁ ଅତି ଦୁର୍ବଳ,
ଅଧଲାଏ କ୍ଷମତା ବି ମୋ ହାତରେ କେତେବେଳେ ନାହିଁ ।
ସେହି ସବୁ ସମୟକୁ ବାଛି ବାଛି ସେମାନେ ପଠାନ୍ତି
ଚିତାକଟା ଶବ୍ଦ ଜଣେ—ସେ ଆସି ବସିଥାନ୍ତି
ମୋ ଫାଟକ ପାଖେ ଚୁପ୍‌ଚାପ୍ ।
ତାଙ୍କର ବ୍ୟବହାର କିନ୍ତୁ
ଅତିଶୟ ଧୋବ ଧାଉଳିଆ ।
ଓଠରେ ମୃଦୁ ହସ ଅବିରତ ଲାଗିଥାଏ ତାଙ୍କ
ସେ ବସି କରୁଥାନ୍ତି ମୋ ଉତ୍ତେଜନାକୁ ଜରିପ ।

ବେଳେ ବେଳେ ଶବ୍ଦ ମୋର ବଗୁଲିଆ ପିଲା ପରି
ମେଘ ଧରି ଯାଏ,
ମୋ ଛାତିରେ ପଶାଇ ଛନକା
ଯେତେ ଡାକିଲେ ଶବ୍ଦ ସେ ତ ଯଦି ଯାଏ ହଜି !
ମୋ ସହିତ ପୁରାତନ ପ୍ରୀତି,
ମୁଁ ଜାଣିଛି ସେମାନଙ୍କ ଯାବତ କୌଶଳ,
ସେମାନଙ୍କୁ ଫୁସୁଲି ଫାସିଲି କେତେବେଳେ ବନ୍ଦୀ କରିହୁଏ,
କେଉଁ ଶବ୍ଦ କଞ୍ଚା ପୁଣି, କେଉଁ ଶବ୍ଦ ଅତି ଅଳିଅଳ,
କେଉଁ ଶବ୍ଦ ପ୍ରଗଳ୍‌ଭ ତ, କିଏ ଅବା ନିଲଠା ବେହେଲ ।

ମୁଁ ଦେଖିଛି ଶବ୍ଦମାନେ ରତିକ୍ରିୟା ପର୍ଯ୍ୟନ୍ତ କରନ୍ତି,
ତଉଲ ଡାଉଲ ଶବ୍ଦ ଆଶ୍ଲେଷରେ ପରସ୍ପରେ ଭିଡ଼ି,
ହଳ-ହଳ, ଯୋଡ଼ି-ଯୋଡ଼ି କଳକେଳିରତ,
ସେତେବେଳେ ଗତି ଗତି ଅତର୍କିତେ ମୁଁ ବାହାରେ ଧରିବାକୁ
ଶବ୍ଦଙ୍କୁ ହଠାତ୍,
ନିସ୍ତବ୍ଧ ଅନ୍ଧାରରେ, ଦଗଣ୍ଡି ଦଗଣ୍ଡି, ଯାଯାବର ଡେଣା ତାଙ୍କ କାଟେ,
ହାତେ ନେଇ ବାକ୍ୟ-ବନ୍ଧ ଚତୁର କତ୍ତୁରୀ ।



Digitized by PPRACHIN, SOA

ଯେତେବେଳେ ଶବ୍ଦସବୁ ଝାଉଁଳନ୍ତି, ଅଥବା
ଭେକରେ ଶୋଷରେ ହେଉଥାନ୍ତି ଆଉଟି ପାଉଟି,
ମୁଁ କିନ୍ତୁ ସେତିକିବେଳେ ଝାମ୍ପି ପଡ଼େ ତାଙ୍କ ଉପରକୁ,
ମୁଁ ଜାଣିଛି ଶିକୁଳି ବା ଜନ୍ତା ନୁହେଁ ପର୍ଯ୍ୟାପ୍ତ ଏଥିକୁ,
ତେଣୁ ତାଙ୍କୁ ଭରିନିଏ ଚଟାପଟ ନିଶ୍ଛିଦ୍ର ବସ୍ତାରେ ।

ତା'ପରେ ଗୁଲିଯାଏ ବଜାର ଆଡ଼କୁ,
ଯେଉଁଠି ବିକ୍ରୀ ହୁଏ ବାସି ବଗ, ମାଛି ଓ ପିଆଜି,
ସେହିଠାରେ କଂସେଇ ଦୋକାନ କଡ଼େ, ବେଶ୍ୟାଳୟ
ପଛପଟେ,
ମୁଠା ମୁଠା ରକ୍ତ, ମାଂସ, ହାଡ଼ ଆଉ ମେଳା ମେଳା
କୁକୁର ଭିଡ଼ରେ
ହଜିଯିବା ଈଷତ୍ ପୂର୍ବରୁ
ପଶିଯାଏ ଛାପାଖାନା ଅନ୍ଧାର ଗଳିରେ
ଯେଉଁଠି କାଳି-ବୋଳା ହାତରେ ତାଙ୍କର
ସମର୍ପଣ କରେ ମୋର ମୁଣି ମୁଣି ଶିହରିତ
ଶବ୍ଦର ଶୀତ୍କାର ।

□ □ □



Digitized by PPRACHIN, SOA

## କଥା ଥିଲା

କଥା ଥିଲା ଦେଖା ହେବ ଗୋଧୂଳିରେ
ଯେତେବେଳେ ଛାଇସବୁ ଓଲ୍ହାନ୍ତି ଗଭୀର ରକ୍ତରେ,
ଆଉ ସୂର୍ଯ୍ୟର ଶବବାହକମାନେ ବିଞ୍ଚୁଥାନ୍ତି ତଗର କଢ଼ି,
କଥା ଥିଲା ତୁମେ ଆସି ହାତ ଧରି ନେଇଯିବ ମୋତେ,
ପଶ୍ଚିମ ଦିଗନ୍ତବ୍ୟାପୀ ସେତେବେଳେ ରକ୍ତପାତ ଯେତେ !

କଥା ଥିଲା ମେଘସବୁ ଘୁଞ୍ଚିଯିବେ ଦିଗନ୍ତରୁ ସବୁଦିନ ପାଇଁ,
ଆକାଶରୁ ଲମ୍ବିଥିବା ଜୋଛନାର ପଡିଆର ପାଇ
ଆମେ ଦୁହେଁ ବୁଡ଼ିଯିବା ନୀର୍ଲିମାରେ ଗାଧୋଇ ପାଧୋଇ,
କଥା ଥିଲା ଦେଖା ହେବ ନିଛାଟିଆ ନଈପଠା କଡ଼େ,
ଗଭରେ ସଜଡ଼ା ଥିବ—ଚମ୍ପାକଢ଼ ଗୋଟିଏ ଦିଓଟି,
ତୁମର ସେସବୁ ଆଜି ମନେ କଣ ପଡ଼େ ?

|| ୨୧ ||

Digitized by PPRACHIN, SOA

ନୀଡ଼ ଅଛି ବିହଙ୍ଗର, ବିଲୁଆ ବି ପଶନ୍ତି ଗାତରେ,
ଯେ ଯେଉଁଠି ଢାକିଢୁକି, ଟିକିଏ ଉଷ୍ଣତା ପାଇଁ
ହୁଅନ୍ତି କାତର,
ହେଉପଛେ ଝାଟିମାଟି, କଥା ଥିଲା ବାନ୍ଧିବାକୁ ଘର ପରସ୍ପର।

କଥା ଥିଲା କେତେ କିଛି କହିବାକୁ ;
ହୃଦୟକୁ ଥାପି ହୃଦୟରେ
ଯୁଗ ଯୁଗ ବିତାଇ ଦେବାକୁ ।
ରକ୍ତରୁ କାଢ଼ି ନେଇ ନୀଳ ବିଷଣ୍ଣତା
ଅବଗାହି ନିସ୍ତରଙ୍ଗ ଗାର୍ହସ୍ଥ୍ୟ ସରସୀ,
କଥା ଥିଲା ପିନ୍ଧିବାକୁ ପ୍ରଗାଢ଼ ବିସ୍ମୟ ଭଳି
ଛଳି ବନାରସୀ ।

"କଥା ଥିଲା, କଥା ଥିଲା"
ଉଡ଼ି ଉଡ଼ି କହିଯାଏ ହଳଦୀ ବସନ୍ତ,
ହୋମାଗ୍ନିର ଧୂଆଁ ପରି ଘୂରି ଅଡ଼େ ବିବ୍ରତ କୁହୁଡ଼ି,
ସୂର୍ଯ୍ୟ ଗଲା ବୁଡ଼ି,
ସବୁକିଛି ଗଲ ତୁମେ ଭୁଲି,
ଦିଗନ୍ତର ପାଦ ପାଖେ ପଡ଼ିରହେ ନିହତ ଗୋଧୂଳି ।

□ □ □



Digitized by PPRACHIN, SOA

# ଶେଷ ଦୃଶ୍ୟ

ସବୁ କିଛି ସରିଯିବ ଦିନେ,
ରକ୍ତିମ ପ୍ରଭାତ ପରି ଦିଗନ୍ତର ବିପୁଳ ବୈଭବ,
ପୂର୍ଣ୍ଣମୀ ତିଥିର ଜହ୍ନ
ଅବା ପୁଣି ପ୍ରାବୃଟର ସଜଳ ମହିମା,
ସବୁ ସରିଯିବ ।

ସରିଯାଏ ସବୁକିଛି ମଳୟର ଦୀର୍ଘଶ୍ୱାସ ପରି
ଆତପ୍ତ କାଞ୍ଚନ ବର୍ଣ୍ଣ ନାରୀ ଦେହ, ସେ ବି ଯିବ ସରି,
ଝରିଯିବ ସୁବର୍ଣ୍ଣ ସୁଷମା ।
ମହମରେ ଗଢ଼ା ସେଇ ଅନବଦ୍ୟ ହାତର ପାପୁଲି,
କୁଞ୍ଚି ହୋଇଯିବ,
ଚିରୁଡ଼ା ଚିରୁଡ଼ା ହୋଇ ଫାଟିଯିବ ସ୍ତନର ଡାଳିମ୍ବ,
ରିକ୍ତ ଆଖି କଥା ଆଉ କହିବନି କେବେ !

ସରିଯିବ ପିଲାବେଳ, ପ୍ରଜାପତି ଡେଣା ଯିବ ଛିଡ଼ି,
ଯୌବନର ନୀଳ ଟ୍ରେନ୍ ପହଞ୍ଚିବ ଶେଷ ଷ୍ଟେସନରେ,
ଜୀବନର ପଶାଖେଳ—ସେ ବି ଯିବ ସରି,
ଥମିଯିବ ଛଞ୍ଚାଣର ତିର୍ଯ୍ୟକ୍ ଉଡ଼ାଣ ।
ଶେଷହେବ ରତି-ଦିନ, ସନ୍ଧ୍ୟାର କାକର-କୁହେଳୀ
ମରିଯିବ ଲଉଡଙ୍କ, ଶୁଖିଯିବ ନେଉଟିଆ ଶାଗର ପଟାଳି ।

□ □ □



Digitized by PPRACHIN, SOA

# ସ୍ମୃତି

ମୁଁ ଦେଖିଛି ଜହ୍ନ ଏକ ଅତିକାୟ ପିଙ୍ଗଳ ବର୍ଣ୍ଣର,
ପାତାଳରୁ ଉଠିଆସେ ସୁଠାମ ଠାଣିରେ ଅକସ୍ମାତ୍,
ମୁଁ ଜାଣିଛି ନୀଳପରୀ କବରୀ ଫିଟାଇ ଦେବ
ଝରଣାରେ ନିଜ ଛାଇ ଦେଖି, ଠିକ୍ ଏତିକିବେଳେ ।

ଠିକ ସେତିକିବେଳେ ଆକାଶରେ ଫୁଟିବ ତରଗଟ,
ଚକ୍ରବାକ ଝାଡ଼ିଦେବ ତା' ଡେଣାରୁ ବିଷଣ୍ଣ ଗୋଧୂଳି
ନିଶାଚର ମେଘମାନେ ଆକାଶରୁ ଅପସରି ଯିବେ ।

ଏଭଳି ଗତିରେ କିନ୍ତୁ ନିଦ ଆସେନାହିଁ,
ଅତୀତର ସ୍ମୃତିସବୁ ପ୍ରେତ ପରି ଭୁସ୍‌କରି ଠିଆହୋନ୍ତି
ମୋ ମନର ଅଗଣାରେ,
ଏ ସ୍ମୃତିର ବିଶ୍ୱସ୍ତତା କିଏ ଅବା ମାପିବ କେଜାଣି ?

ଦିନେ କିନ୍ତୁ ତା' ଛାତିରେ ପବିତ୍ରତା ଥିଲା,
ଗୋଲାପର ବାସ୍ନା ଥିଲା ଲକ୍ଷି,
ଦିନେ କିନ୍ତୁ ତା' ଆଖିରେ ଆଖି ରଖି ଭୁବନ ଭୁଲିଛି,
ଦିନେ କିନ୍ତୁ ମରୁଭୂମି ପାରିହୋଇ
ପାଇଛି ସେ ସବୁଜ ଠିକଣା ।



Digitized by PPRACHIN, SOA

ସ୍ମୃତି କଣ ଦଗାବାଜ , ତାର କଣ ଅବୟବ ନାହିଁ,
ସେ କାହିଁକି ନେଇଯାଏ ତା ପାଖକୁ ବାରମ୍ବାର ମୋତେ ?
ମୁଁ ଦେଖିଛି ବିଛଣାରେ ସେ ଶୋଇଛି ବଡ଼ ନିରିମାଖୀ,
ତା ଶାଢ଼ୀର ପଣତରେ ଲେଖା ନାହିଁ ଇତିହାସ କିଛି,

ନଅ ଲକ୍ଷ ଅହଙ୍କାର ଫିଙ୍ଗିଦେବି ଏହି ମୁହୂର୍ତ୍ତରେ,
ନଗଣ୍ୟ ଭିକାରୀ ପରି ମାଗିନେବି ନତଜାନୁ ହୋଇ
ତା ହାତର ପାପୁଲିରୁ ଟୋପାଟୋପା ଯେତେକ ଉଷ୍ମତା ।

ସ୍ମୃତି କଣ ଖାଲି ସ୍ମୃତି, ହାତ ନାହିଁ, ଗୋଡ଼ ନାହିଁ ତାର,
ମୁଁ ହଠାତ୍ ଗ୍ହିଁଛି ଚମକି,
ସେମାନେ ନାହାନ୍ତି କେହି,
ଛାଇ କଣ କେବେ ଖୋଜିହୁଏ ?

ପେସ୍ବର ଡେଣାରେ ଚଢ଼ି ସ୍ମୃତିସବୁ ପୁଣି ଉଡ଼ିଗଲେ ।





Digitized by PPRACHIN, SOA

## ଘର

ମୁଁ ଗୋଟାଏ ପ୍ରାସାଦ ତୋଳିବି ପାହାଡ଼ ଚୂଡ଼ାରେ । ଯେଉଁଠି ପ୍ରତିଦିନ ସୂର୍ଯ୍ୟ ସିଂହାସନ ଛାଡ଼ି ଯା'ନ୍ତି ବନସ୍ତକୁ । ଆଉ ପାହାଡ଼ର ଜାନୁ ଧରି ଗୁରୁଣ୍ଡି ଗୁରୁଣ୍ଡି ଉଠି ଆସେ ଗେଣ୍ଡାପୁଅ ପରି ଗୋଲଗାଲ ଜହ୍ନଟିଏ । ମୁଁ ତା ଲାଗି ପାରିଦେବି ଅଗଣାରେ ରକ୍ତିମ ଗାଲିଚ୍ଚ । ଆକାଶର ଗନ୍ଧୁଆ ଭରିଯାଏ ତଗର ନକ୍ସାରେ । ଘରର ଝରକାରେ ମେଘମାନେ ପର୍ଦ୍ଦା ହୋଇ ଝୁଲୁଥିବେ । ଶଙ୍ଖ ମଲମଲ ପଥରରେ ଗଢ଼ା ନୀଳପରୀର ଉନ୍ମୁକ୍ତ ସ୍ତନ ଉପରେ କେଉଁଠୁ ପ୍ରଜାପତି ଉଡ଼ି ଆସି ବସିବ ହଠାତ୍ । କୋଇଲି ପାଇଁ ଖଞ୍ଜିଦେବି କଦମ୍ବ ଗଛଟିଏ ।

ବାଳିକା ନଈ ମୁଁ ଚିରଦିନ ଭଲପାଇଛି । ଯିଏ ବାଲିଗରଡ଼ା ନେଇ ଖେଳିବାରେ ବ୍ୟସ୍ତ ଥାଏ । ଘରର ଶେଷ ପାହାଚରେ ପାହାଡ଼ର କାନ୍ଧ ପାଖେ ଉପବୀତ ପରି ନଈ ବା ପାଇବି କେଉଁଠୁ ? ଈଶ୍ୱର ବାବୁଙ୍କୁ ଗୋଟିଏ ଝରଣା ପାଇଁ ଦରଖାସ୍ତ କରିଛି । ବହୁତ ଅନୁରୋଧ ପରେ ସେ ରାଜି ହୋଇଛନ୍ତି ଦେବାକୁ । ବଗିଚ୍ଚର ଶେଷପ୍ରାନ୍ତରେ ପାରିଜାତ ଗଛପାଖ ଦେଇ ଝରଣା ବହିଯିବ ତାଙ୍କ ବରଦ ମୁତାବକ କୁଳୁକୁଳୁ ଶବ୍ଦ କରି । ଆପଣ ଆସିବେ କି ଅତିଥି ହେବାକୁ କିମ୍ବା ଛୁଟିଦିନ ଦେଖି କରିବାକୁ ପିକ୍‌ନିକ୍ ?

ସହରରେ ଭୀଷଣ ଘରର ଅଭାବ ଆଜିକାଲି । ପଲସ୍ତର ଖସିଥିବା ଝରକାବିହୀନ ଗୃହାଙ୍କ ପାଇଁ ଲାଇନ୍ ଲାଗିଛି । ଆଉ ସନ୍ଧ୍ୟାହେଲେ ଚିରୁଗୁଣିମାନେ ଗଧିଆ ପିଠିରେ ସବାରି ହୋଇ ହାଓ୍ୱା ଖାଇ ବାହାରନ୍ତି ନିତି । ରକ୍ତ ଦେଖିଲେ ସେମାନଙ୍କ କଟାସ ଆଖି ଆହୁରି ଉଜ୍ଜ୍ୱଳ ଦିଶେ ।

□ □ □



Digitized by PPRACHIN, SOA

# ଖବର

ଖବରର ନଅଙ୍କ ପଡ଼ିଛି ଆଜିକାଲି,
କୁକୁରଙ୍କୁ କାମୁଡ଼ିବା ମଣିଷଙ୍କ ଏକାନ୍ତ ଅଭାବ,
ଖବରର ପ୍ରଚଣ୍ଡ ମନ୍ଦାଡ଼ି ।
ଧର୍ଷଣ, ବଳାତ୍କାର, ଏ ସବୁକୁ ଛୁଇଁଯାଏ
ଖବରର କ୍ରମଶ ଟାପୁଲି—
ମୃତ୍ୟୁପରି ରିପୋର୍ଟର
ବ୍ୟକ୍ତିଗତ ଦୁଃଖ ପାଇଁ ପଙ୍କିତର ମାରୁଥାଏ ଖାଲି ।

ପେଟ୍ରୋଲ ଦରରେ ନିଆଁ, କିମ୍ବା,
ହନଲୁଲୁ ଭୂମିକମ୍ପ ପରି
ସୁଦୂର ରୋମାଞ୍ଚକର ସମ୍ବାଦରେ କାଗଜ ପୁରିଛି ।
ଗୁରୁବାରୀ ଖାଇନାହିଁ ସାତଦିନ ଧରି,
ହୋଇଛି ଭୀଷଣ ତାକୁ ଜ୍ୱର,
ତା' ଝିଅକୁ ଟାଣିନେଲା ଭେକ,
ଓପାସର ମଶାଣିଆଡ଼କୁ,
ଏ ସବୁ ଖବର ପାଇଁ ବେଳ କାହିଁ ଟେଲିପ୍ରିଣ୍ଟର୍‌ର ।

ଡାକଦେଲା ଆଜିର ହକର,
ସହର ଛକରେ,
ସମୁଦ୍ରର ଢେଉସବୁ କରିଛନ୍ତି ଜନ୍ମ ନିୟନ୍ତ୍ରଣ,
ଜହ୍ନ ନାହିଁ ଆକାଶରେ,
ହୋଇଛି ଫେରାରୀ,
ଆଶ୍ରୟ ସେ ନେଇଅଛି ମଙ୍ଗଳ ଗ୍ରହରେ
ତା'ଲାଗି ୱାରେଣ୍ଟ୍ ହେଲା ଜାରି ।

□ □ □



Digitized by PPRACHIN, SOA

## ଗୋଟିଏ କବିତା ପାଇଁ

ଗୋଟିଏ କବିତା ପାଖେ ନତଜାନୁ ହୋଇ ମୁହିଁ,
ମାଗିନେବି ଶିରସ୍ତ୍ରାଣ, କବଚ କୁଣ୍ଡଳ,
ଅମରତ୍ୱ ଲୋଡ଼ା ନାହିଁ ମୋର,
ଗୋଟିଏ କବିତା ପାଇଁ ଜହ୍ନ ପାଖେ ଠିଆ ହୁଏ ମେଘ ।

ଗୋଟିଏ କବିତା ପାଇଁ ଧନୁପରି ଭ୍ରୂଲତାରେ
କେହି ଜଣେ ଯୋଖିଥିଲା ବାଣ,
ରକ୍ତିମ ପାପୁଲିରେ ଆଙ୍ଗୁଳାଏ ଅନ୍ତର ଟେକି
କେହି ଦିନେ କହିଥିଲା, ଆସନାହିଁ କେଭେ ହେଲେ
ପାଖକୁ—ମୋ ରଣ ।



Digitized by PPRACHIN, SOA

ଯୋଜନ ଯୋଜନ ପଥ ଚାଲିଅଛି
କବିତାର ଲାଗି,
ନିଛାଟିଆ ନଈ ପାଖେ ଠିଆହୋଇ କରିଛି ଗୁହାରି
ମୋ ହାତରେ ବଂଶୀ ଧ୍ୱନି, ମନ୍ତ୍ରପରି କିଛି ଶବ୍ଦ ଦିଅ,
ଯାହାକୁ ମୁଁ ସାଇତିବି ଅକ୍ଷୟ ତୂଣୀରେ ।

ଏହିପରି ବିତିଗଲା ଦିନ, ଦଣ୍ଡ, ଅନେକ ମୁହୂର୍ତ୍ତ,
ଗୋଟିଏ କବିତା ପାଇଁ ଧଇଁସଇଁ ନିଃସଙ୍ଗ କପୋତ,
ଦୁଃଖ ପରି ମୁହଁ ତାର,
ଅଦୂରରେ ଶୋଇ ରହେ ଗୋଧୂଳିର ନିହତ ଆଲୋକ ।

ଗୋଟିଏ କବିତା ପାଇଁ,
ଗୋଲାପରେ ଏତେ ବାସ୍ନା, ପେଲବତା କିଶୋରୀ ସ୍ତନରେ,
ତା' ଲାଗି ସହସା ଯାଏ ଜାନୁ ସନ୍ଧି-ଗୋପନତା ଭରି,
କବିତା ଗୋଟିକ ଲାଗି
ଶିଶୁର ଦଉଡ଼ି ଖେଳେ
ମାଛ ପରି ତରଳ ଅନ୍ଧାରେ ।

□ □ □



Digitized by PPRACHIN, SOA

# ଦୁଃଖ

ଦୁଃଖ ସଙ୍ଗେ ଦେଖା ହେଲା, ଇନ୍ଦ୍ରଧନୁ ଆକାଶରେ
ନ ଥିଲା ସେଦିନ,
ସ୍ୱେଚ୍ଛାଚାରୀ ପବନରେ ଉଡ଼ୁଥିଲା ବାଳ ତାର ହୋଇ ଫୁରୁ ଫୁରୁ,
ମୁହଁଯାକ ଗୁଡ଼ ବଳି ବଳି ।

ମୁଁ ତାକୁ ନେଇଗଲି ହାତ ଧରି ନୀଳ ପାଣି ପାଖେ
ଧୋଇବାକୁ ଶୀର୍ଣ୍ଣ ଗାଲ, ଆଖିର କୋରଡ଼,
ସେ କିନ୍ତୁ ଶୁଣିଲା ନାହିଁ ମୋ କଥାକୁ,
ହୃଦୟର କ୍ଷତ ତାର ମେଲିଲାନି ସୁଅ ମୁହେଁ ମୁହେଁ ।

ତା ଆଖିର ସ୍ୱପ୍ନ ସବୁ ହଜିଗଲେ ଦୂର ମୁହାଣରେ,
ଆଖିରେ ନଥିଲା ଲାଗି ଶାଗୁଆ ଭରସାର ଆଭ,
ସେ କିନ୍ତୁ ଓପାଡ଼ିଥିଲା ବିଶ୍ୱାସର ମୂଳ ସୁଦ୍ଧା ଚେର,
ଫାଁ। ଗାଳି ପଡ଼ିରହେ ବୋଧି-ଦ୍ରୁମ ବିଷଣ୍ଣ ସଂଧ୍ୟାରେ ।

ଦୁଃଖ ସଙ୍ଗେ ଦେଖାହେଲା ସୀମାନ୍ତର ରେଳ-ଷ୍ଟେସନରେ,
ସିଟି ମାରି ରେଳଗାଡ଼ି ତାକୁ ଛାଡ଼ିଗଲା,
ଦୂରଗାମୀ ବଳାକାର ଧାଡ଼ି
ତା ଧୈର୍ଯ୍ୟର ଜଳାବାଟେ ଖସିଗଲେ ଦୂର ଦିଗ୍‌ବଳୟେ ।
ଠୋ କରି ଫାଟିଗଲା ସୁଖର ରଙ୍ଗୀନ୍ ବେଲୁନ୍ ।

ଦୁଃଖ ପାଇଁ ମାଗୁଥିଲା ପଇଁତରା ସନ୍ଧ୍ୟା ଇତସ୍ତତଃ,
ଦୁଃଖ ଆସି ଠିଆହେଲା ବିପର୍ଯ୍ୟସ୍ତ, ମଗ୍ନ ବିଷାଦରେ,
ବଗିଚା, ପୋଖରୀ, କିମ୍ବା ନୂଆଁଣିଆ ଗଛର ଇଶାରା ତାର ଘଟିବନି,
ତା ଭାଗ୍ୟରେ ଲେଖାନାହିଁ, ବିମ୍ବୋଷ୍ଠ, ଚମ୍ପା-ଗୋରୀ, କିମ୍ବା ସିଂହ-କଟୀ,
ଧୀରେ ଧୀରେ ଉଠି ଆସେ
ମେଘର କବରୀ ଭେଦି ଜହ୍ନର କଣେଟୀ ।

□□□



Digitized by PPRACHIN, SOA

# ବ୍ୟବଧାନ

ତୁମେ ଅଛ ଗୋଟିଏ ତଗରେ,
ମୁହଁ ତୁମ ଢାଙ୍କି ଦିଏ ମେଘ,
ମୁଁ ଅଛି ଅପର ଏକ ନକ୍ଷତ୍ରରେ,
ଯେଉଁଠି ପହଞ୍ଚିବାକୁ ଅନେକ ଆଲୋକ-ବର୍ଷ ବିତେ !

ସମୟର ସୁଅ କଣ ବହଇ ଉଜାଣି ?
ମୁଁ କଣ ପାରିବି ଛୁଇଁ ଜାଣି ଜାଣି,
ତୁମ ଦୁଃଖ, ସୁଖ, ଦୁଃଖ, ସୁଖ,
ଦୁଃଖ––ଦୁଃଖ––ଦୁଃଖକୁ ?

ତୁମକୁ ପାଇଲି ଭଲ ସ୍ୱପ୍ନରେ କିଛି କ୍ଷଣ ପାଇଁ,
ତୁମେ ଆସି ଠିଆ ହେଲ ବିସ୍ରସ୍ତ କେଶରେ,
ଦେହରୁ ଖସାଇ ଲଜ, ଫିଙ୍ଗି ଦେଇ ଦ୍ରୌପଦୀର ଶାଢ଼ୀ ।
ସ୍ଫଟିକ ବେଦୀର ସ୍ତମ୍ଭ ଜାନୁଦ୍ୱୟ ଲମ୍ବିଛି ସଳଖ,
ଦେହର ଲତାରେ ଫଳ
ବର୍ତ୍ତୁଳ ସମବେଦନାରେ,
ଯୋନିରୁ କ୍ଷରଇ ଦ୍ୟୁତି ଅନ୍ଧାରର ସ୍ତବର ଭଙ୍ଗୀରେ ।

ସ୍ୱପ୍ନରେ ଧରିଲି ହାତ, ଗଡି ଆସି ଓହ୍ଲାଏ ଦେହରେ,
ଅକସ୍ମାତ୍ ଭୂମିକମ୍ପ ଘଟେ ବିଛଣାରେ ।
ମୁଁ କିନ୍ତୁ କରିଛି ଖୁନ ଦେଉଳର ସବୁ ପବିତ୍ରତା,
ରକ୍ତରେ ଓଦା ଦୁଇ ହାତ ଦେଇ ଛୁଇଁଛି ଚିବୁକ,
ସ୍ୱପ୍ନ ସବୁ ଝରିଯାଏ,
ଯେମିତି ଝାଉଁଳେ ନିତି
ଜୋଛନା ଖରାରେ ।





Digitized by PPRACHIN, SOA

# ଠିକ୍ ଖରାବେଳେ

ବେଳେବେଳେ ଇଛା ହୁଏ ବଜାରକୁ ବାହାରି ଯିବାକୁ,
ଠିକ୍ ଖରାବେଳେ,
ପିନ୍ଧି କ୍ରୁର ସୂର୍ଯ୍ୟାସ୍ତ ରଙ୍ଗର ପଞ୍ଜାବୀ,
ନିହାତି ଶାଗୁଆ-ଛକି ଲୁଙ୍ଗିଟିକୁ ଆନ୍ଦୋଳିତ କରି,
ଫିଙ୍ଗିଦେଇ ମଧ୍ୟବିତ୍ତ ସୁଖ,
ଷଣ୍ଢ-ଯୋଦ୍ଧାର ଉଦ୍ଧତ ଠାଣିରେ
ଚହଲିବାକୁ ସଡ଼କରେ ନିଧଡ଼କ ।

ମନ ହୁଏ ବେଳେବେଳେ କିଣିବାକୁ ତାମଡ଼ା ଶୁଖୁଆ,
ତା'ପରେ ଗିଳିବାକୁ ବେଲାଏ ପଖାଳ, ଠିକ୍ ଖରାବେଳେ,
ଯେଉଁଠି ଗଛିଟି ନିଏ ମୋଡ଼ ଏକ ଓଟ କୁଜ ପରି,
ସେଇଠି ଲୁଙ୍ଗି ଟେକି ମୂତିବାକୁ ଭାରି ମନ ହୁଏ,
ଭୁଲିଯାଇ ପଦାତିକ ଅସହିଷ୍ଣୁ ଆଖିର ଭର୍ତ୍ସନା,
ଚିହ୍ନାଇ ଦେବାକୁ ସେହି ଅମୋଘ ନୋଟିସ୍,
'ଏଠାରେ ପରିସ୍ରା କରିବା ମନା ।'

ତା'ପରେ ଦିନେ ଦିନେ ମନ ହୁଏ ହଜି ଯିବା ଲାଗି
ବୋଉର ସ୍ନେହ ପରି ଆରକ୍ତିମ ମୁଠାଏ ଖରାରେ,
ଖୋଜିବାକୁ ଅଲୌକିକ ଗ୍ରାମ ।
ମୋତେ ଦେଖି ଭୁସ୍ କରି ପାଣି ଭେଦି ଉଠିବ ଶେଉଳ,
ବିଲୁଆ ଓ ଗୋଧି ସାପ ମୁରୁକି ହସିବେ,
ଉଡ଼ିଯିବ ଗେଣ୍ଡାଳିଆ ଠିକ୍ ଖରାବେଳେ ।

□ □ □



Digitized by PPRACHIN, SOA

# ମହାପୃଥିବୀ

ପୃଥିବୀଟାକୁ ବଡ଼ ନିଃସ୍ୱ ଲାଗୁଛି ଆଜିକାଲି;
ନୀଳ ବୁଦ୍‌ବୁଦ ସବୁ ସରିଗଲା ସାଗର ଢେଉରୁ,
ଚାର୍ଲିଚ୍ୟାପ୍‌ଲିନ୍ ଭଳି ଚାଲିବାକୁ ଗୋଇଠି ଉପରେ,
ଅଭ୍ୟାସ କରିବାକୁ ହେବ ।

ଅତୃଣ ପୃଥିବୀରେ ହିରୋଶିମା ଚାରିଆଡ଼େ ବିଛାଡ଼ି ପଡ଼ିଛି,
ମେଘ ବଡ଼ ଅଭିମାନୀ ଭଙ୍ଗୀରେ ଚାଲିଯାଏ
ବିକ୍ଷାକ୍ତ ମରୁଭୂମି ଆଡ଼େ ।
ପ୍ଲାଷ୍ଟିକ ସହରର ସବୁ ଗଳି
ସିନ୍ଥେଟିକ ନାରୀଙ୍କର ଦୁଃସ୍ୱପ୍ନରେ ଭରିଯାଏ ।

ମାୟାମୟ ଖଗରେ ଆଜି ବି
ବିଷଣ୍ଣ ଛାଇ ସବୁ ଓହ୍ଲାନ୍ତି ରକ୍ତ ଧୋଇବାକୁ,
ସୂର୍ଯ୍ୟର ସଖ୍ୟତା ଭୁଲି ରକ୍ତାକ୍ତ ଚଢ଼େଇ
ପାଚିରୀରେ ପିଟୁଥାନ୍ତି ଡେଣା ।
ପଡ଼ିଆର ନିଷ୍ଠୁର ଘାସରେ
ମହାର୍ଘ ପ୍ରଜାପତି ଆଉ ଫେରି ଆସେ ନାହିଁ ।

ଆଜି ମାଇଲ ମାଇଲବ୍ୟାପୀ କ୍ଲାନ୍ତି
ଆଉ ବେଦନା ମେଳରେ
କାହାଣୀକୁ ଅପେକ୍ଷା କରିବାକୁ କହିଆସେ ।
ପବନର ବେହେଲାରେ ଭୀଷଣ ଦୁଃଖର ସ୍ୱର ବାଜୁଛି,
ସାହାରାର ବାଲିବୁଦ ଡେଇଁ ଯେଉଁ ଶିଶୁଟି ଉଠି ଉଠି ଆସୁଛି,
ତା ହାତରେ ଧରାଇ ଦିଏ ସବୁଜ କବିତାର ଅବ୍ୟର୍ଥ ଚିଟାଉ ।

□ □ □



Digitized by PPRACHIN, SOA

## ଅମୀର ଖାଁ

ସେଦିନ ଅମୀର ଖାଁ ଗାଉଥିଲେ
ଗଗ ଦରବାରୀ,
ଆକାଶରେ ଉଇଁଥିଲା ସେ ବର୍ଷର
ଶ୍ରେଷ୍ଠ ଜହ୍ନ,
ତନ୍ମୟତା ଥିଲା ପବନରେ,
ଅଜସ୍ର ସୁରଭି ଥିଲା ପାଖୁଡ଼ାରେ ରଜନୀଗନ୍ଧାର ।

ହାତର ଅଙ୍ଗୁଳି ସବୁ କହୁଥିଲା
କଥା ତାନ୍‌ପୁରରେ,
ହୃଦୟର ଗଭୀରରୁ ଉତ୍ସରିତ
ବେଦନାର ଭାଷ୍ୟ
ଝରି ଝରି ପଡ଼ୁଥିଲା ଗମକ-ତାନରେ ବାରମ୍ବାର ।

ଜୀବନର ଶ୍ରେଷ୍ଠ କାଳ ଆସିଥିଲା
ସେହିଦିନ,
ପୋଛିଦେଇ ସବୁ ଅପୂର୍ଣ୍ଣତା—
ଧାନଖେତ ପୂରିଥିଲା ପାଚିଲା ଧାନରେ ।



Digitized by PPRACHIN, SOA

ସେଦିନ ଅମୀର ଖାଁ ଗାଇଥିଲେ
ଯୌବନର ଦୃପ୍ତ ଭଙ୍ଗିମାରେ,
ଧମନୀରେ ଉଷ୍ଣ ରକ୍ତ ଢାଳି ।
ରମଣୀୟ ଲାଗୁଥିଲେ ପୃଥିବୀର
ପ୍ରତ୍ୟେକ ନାରୀ ସେହିଦିନ,
ହୃଦୟର ତନ୍ତ୍ରୀ ସବୁ ଥରୁଥିଲା ସ୍ୱର-ସପ୍ତକରେ ।
ଘରେ ମୋର ଉଠିଥିଲା ଲକ୍ଷେ ଦୀପ ଜ୍ୱଳି ଅକସ୍ମାତ୍ ।
ମୋ ଆଗର ଗାଲିଚ୍ଚରେ ବସିଥିଲେ
ଦେବ ଏକ ଅଲୌକିକ ସିଂହର ଠାଣିରେ ।

କେତେବେଳେ ଗତି ପାହି
ପୃଥିବୀର ଶ୍ରେଷ୍ଠ ଖେଳ
ମୋର ମୁହାଁମୁହିଁ
ଜାଣେ ନାହିଁ—

ମୁଁ କିନ୍ତୁ ଗୁହିଁଥିଲି ଫେରି ଫେରି
ରେଶମୀ ସୂତାରେ ଗୁଡ଼ା
ଅସରନ୍ତି ସୁର ଆସୁ ଆହୁରି ଆହୁରି,
ସେଦିନ ଅମୀର ଖାଁ ଗାଉଥିଲେ
ରାଗ ଦରବାରୀ ।





Digitized by PPRACHIN, SOA

## ବୟସ

ବିଷଣ୍ଣ ଗୋଲାପ ପରି ଦର୍ପଣରେ
ମୋ ମୁହଁର ଛାଇ
ଧମନୀରେ ରକ୍ତ ଗୁଡ଼ିକେ ଛୋଟେଇ ଛୋଟେଇ—
ରେସ୍‌ର ଅନ୍ତିମ ଘୋଡ଼ା ଭଳି ।

ଗୋଧୂଳିର ପିଠି ଛୁଇଁ ବଉଳୀ ବାଡ଼ିରେ,
ଆଗମ-ଚୌକିକୁ ନିତି ଫେରିଆସେ
ନିର୍ଦ୍ଦିଷ୍ଟ ପ୍ରହରେ ।
ଯନ୍ତ୍ରଣାର ସପ୍ତମ ସିଡ଼ିରେ ସେତେବେଳେ ଇତିହାସ
ତାର ନୂଆ ଖୁରା ବାଳକୁ ଛାଟି ଠିଆହୁଏ
ଅଶ୍ଳୀଳ ଭଙ୍ଗୀରେ ଅଗ୍ରନଳ ।

ମୃତ୍ୟୁ ସଙ୍ଗେ ପଶାଖେଳ ଖୁବ୍ ଜମିଲାଣି,
ନକଲ ଦାନ୍ତକୁ ଗୁପି ପୁଣି ଥରେ ପଶାକୁ ସଜାଏ ।
ଏ କେଉଁ ଆଶ୍ଚର୍ଯ୍ୟ ଖେଳ,
ଧମନୀର ସବୁ ରକ୍ତ ଠୁଳ ହୋଇ ଫାଟେ ସୂର୍ଯ୍ୟାସ୍ତରେ ?



Digitized by PPRACHIN, SOA

ସ୍ୱପ୍ନ-ପେଡ଼ିର ଚାବି ହଜି ଯିବା ପରେ,
ପ୍ରକାଣ୍ଡ ଗରୁଡ଼ ପରି ନିଃସଙ୍ଗତା
ଝାମ୍ପି ନିଏ ନିଷ୍ଠୁର ପଞ୍ଝାରେ,
ଗୋଲାପର ପାଖୁଡ଼ାରୁ ସବୁ କାତରତା ।
ପରିଚିତ ପକ୍ଷୀର କୂଜନ
ଝରିପଡ଼େ ଅଶ୍ୱତ୍ଥ ଗଛରୁ,
ଅନ୍ଧକାର କାପୁରୁଷ ପରି ଝୁଲୁଥାଏ ।

କଥୋପକଥନ ସବୁ ଶେଷହୁଏ ପୃଥିବୀ ସହିତ,
ନଶ୍ୱର ପବନରେ ଲାଖିଥାଏ ଘ୍ରାଣ
ଗଙ୍ଗଶିଉଳୀର,
ଯୌବନର ନୀଳ ଟ୍ରେନ୍
ଚାଲିଯାଏ ମାନଚିତ୍ର ଭେଦି ।

ଚାଳିଶା ଚଷମାକୁ ପୋଛି
ସ୍ମୃତିର କୁଞ୍ଜରେ
ଝାଡ଼ିଦେଇ ହାତରୁ ପୁରାତନ
ଯାବତୀୟ ଘୃଣା,
ସମୟ ଅଳପ, ବାଳରେ କଲପ,
ପ୍ରତୀକ୍ଷା କରୁଥାଏ ମୁଁ ତ
ସନ୍ଧ୍ୟା ପାଇଁ ନିଶ୍ଚିନ୍ତ ଟେବୁଲରେ
ଧୂମାୟିତ ଚାହା-କପ୍ ରଖି ।

□ □ □



Digitized by PPRACHIN, SOA

## ରଙ୍ଗ

ପ୍ରେମର ରଙ୍ଗ ଲାଲ,
ଯେମିତି ବର୍ଣ୍ଣ ସବୁ ଜଳିଉଠେ ପୂର୍ବ ଦିଗନ୍ତରେ ।
ସାଗର ସାନ୍ନିଧ୍ୟ ପାଇଁ ସମୁଦ୍ର-ସାରସ
ଉଡ୍ଡୀନ ଡେଣାରେ ତାର ବୋଳିହୁଏ ଯେତେକ ଆର୍ଦ୍ରତା ।
ପବନର ଗ୍ରୀବୁକରେ ତିଳେମାତ୍ର ଭର୍ତ୍ସନା ନାହିଁ ସେତେବେଳେ,
ଆଜିର ଏହି ଅପରୂପ ସ୍ନିଗ୍ଧ ସକାଳରେ
ତରଳ ମାଧୁର୍ଯ୍ୟ ପରି ଖଗର ଆବର୍ତ୍ତ ଘେରିଆସେ,
ଇଚ୍ଛାହୁଏ ହଜିଯିବା ଲାଗି ଆଲୋକର ଅଜସ୍ର ଧାରରେ ଅଚିରାତ୍ ।

ଧୂସର ଦୁଃଖର ରଙ୍ଗ,
ଝୁରି ହୁଏ ନିଃସଙ୍ଗ ଚିଲ ରିକ୍ତ ଗୋଧୂଳିରେ,
ଥୁଣ୍ଟା ତାଳଗଛ ପରି ଠିଆ ହୁଏ ବିବର୍ଣ୍ଣ ପ୍ରଦୋଷ,
ତୀକ୍ଷ୍ଣ ଛୁରିକା କାଟେ ବିଳାପର
କଣ୍ଠରୁ ଯନ୍ତ୍ରଣା ।



Digitized by PPRACHIN, SOA

ଶୋକର ରଙ୍ଗ ଧଳା,
ଅବିରତ ଝରିଯାଏ ଆଖିରୁ ଶ୍ରାବଣ,
ନିଃସ୍ୱ ମେଘ ଦିଗଭ୍ରଷ୍ଟ ହୁଏ ବାରମ୍ବାର
ସଦ୍ୟ ବିଧବା ପରି ସଂଧ୍ୟା ଆସେ ଇଙ୍ଗଳା ହାତରେ ।

ଈର୍ଷାର ରଙ୍ଗ କଳା,
ବିଷାଦରେ ମଗ୍ନ ରାତି ଓହ୍ଲାଏ
କ୍ଲାନ୍ତ ଆଖିପତା ଛୁଇଁବାକୁ ।
ପଳାତକ ନିଦ ଲାଗି ନେହୁରା ହେଲେ ବି
ସେ କିଛୁ ଦିଏନା ଧରା କୁମାରୀ ଆଖିରେ ।

ଛାତିରେ ଭୀଷଣ କଷ୍ଟ,
ତୀବ୍ର ବେଦନା ଏକ ବିନ୍ଧ କରେ
ମାଛ କଣ୍ଟା ପରି ହୃଦୟକୁ,
ହଜିଯାଏ ସବୁଦିନ ଲାଗି ପବିତ୍ରତା ।

□ □ □



Digitized by PPRACHIN, SOA

# ପିତାମହ

ତୁମେ କେତେ ଡେଙ୍ଗା ଥିଲ ?
ବୃଷସ୍କନ୍ଧ ଥିଲ ତୁମେ,
ବାହୁ ଥିଲ ଆଜାନୁଲମ୍ବିତ ?
ଜାଣେ ନାହିଁ ।
କିଏ ହେବ ଜାଣି କହ ଉତ୍ତର ବା ଏସବୁ ପ୍ରଶ୍ନର ।

ସେଦିନ ସନ୍ଧ୍ୟାରେ
ଠିଆ ହେଲି ତୁମ ଛବି ଆଗେ,
ଅକସ୍ମାତ୍ ତୁମ ମୁହାଁମୁହିଁ,
ଆଖି ତୁମ ଜଳୁଥିଲା ବୈଦୁର୍ଯ୍ୟ ମଣି ପରି
ନିକେଲ ଚଷମାରେ ।
ମୋତେ ତୁମେ ଦେଖୁଥିଲ ନିରିଖି ନିରିଖି
ସନ୍ଧ୍ୟାରେ ସେଦିନ ।

ତୁମେ କେବେ ଧରି ନାହିଁ ହାତେ ତୁମ ବାରହାତ ଖଣ୍ଡା,
ରକ୍ତାକ୍ତ ପାମୁଲିରେ ଛୁଇଁନାହଁ ପଳାତକା ନାରୀର ଚିକୁର
ଘୋଡ଼ାର ଟାପୁର ଶବ୍ଦେ ବାରବାଟୀ
ଆଉ ଜାଗି ନାହିଁ ।
ବର୍ଗୀ କାହିଁ ?
ବର୍ଗୀସବୁ ଲୁଚିଛନ୍ତି ଇତିହାସ ପାଉଁଶ ଗଦାରେ ।

ଏବେ ବି ମାଧବମାନେ ଗଡୁଛନ୍ତି
ଏରୁଣ୍ଡି ଉପରେ,
ଶୁଭବୁଦ୍ଧି-ଦିବ୍ୟଜ୍ଞାନ ଠୁଙ୍ଗା ଠୁଙ୍ଗା ବିକା ହୁଏ
ସ୍କୁଲ୍ ବାରଣ୍ଡାରେ ।
ପ୍ଲାଷ୍ଟିକ୍‌ର 'ଓଁ' ସବୁ ପଡ଼ିରହେ ସାଗର ବେଳାରେ ।



Digitized by PPRACHIN, SOA

ତୁମର ଉଚ୍ଚତା କେତେ ?
କେତେ ଅବା କୋଡାର ନମ୍ବର ?
ଜାଣେ ନାହିଁ ।
ତୁମେ କିନ୍ତୁ ଈଶ୍ୱରଙ୍କ ବଗିଚ୍ଚରେ
ଶୁଣିଅଛ ଫୁଲଙ୍କ ସଂଳାପ ।
ଆଉ ପୁଣି ଦେଖି ଅଛ
ଅନ୍ଧାରକୁ ଧୀରେ ଧୀରେ
କିଭଳି ଆଲୋକ,
ଆଲିଙ୍ଗନ କରେ ।

ଆଜି କିନ୍ତୁ ପବନରେ ତିଳେ ମାତ୍ର
ପବିତ୍ରତା ନାହିଁ ।
ଶିଶିରର ଆତ୍ମକଥା କେହି ଆଉ ଲେଖୁନାହିଁ ଆଜି ।
'ଲିସ୍‌ବନ ଭୂମିକମ୍ପ' ଘଟିଯାଏ ମଧୁବନ ତୋଟାରେ ତୁମର,
ତୁମେ ବଡ଼ ଅଭିମାନୀ,
ଚୁପ୍‌ଚାପ୍ ଶୋଇ ରହ ସତୀ ଚଉରରେ ।

ବହୁବର୍ଷ ବିତିଗଲା
ସେଦିନ ହଠାତ୍
କେହି ଗୋଟେ ବଗୁଲିଆ
ଘାଇଆଳ ଚୋକା
ହାତର ବଇଁଶୀକୁ ଥୋଇ,
କୁଢ଼େଇଲା ଅଗ୍ରେନକ
ଅଞ୍ଜୁଳାଏ ଅନାବନା ଫୁଲ,
ତୁମ ସମାଧିରେ ।

□ □ □



Digitized by PPRACHIN, SOA

# ଦୂରତ୍ୱ

ଦିଗନ୍ତର ଉପକୂଳ ଧରି ଚାଲୁ ଚାଲୁ
ଦେଖା ହେଲା ତୁମ ସହିତରେ ।
ହେମନ୍ତ ପରି ଧୂସର ତୁମର ବାଳ ସଜାଡ଼ୁ ସଜାଡ଼ୁ
ତୁମେ ଈଷତ୍ ହସିଥିଲ ସେଦିନ କେବଳ ।

'ବିଦାୟ' ଶବ୍ଦଟା ତୁମ ଓଠ ଉଚ୍ଚାରଣ କରିବା ପୂର୍ବରୁ
ମୁଁ ଚାଲିଆସିଛି ଧ୍ୱସ୍ତ ମନ୍ଦିର ଅନ୍ଧକାରର ଶିଳାମୟ ଚଟାଣ ଭିତରକୁ,
ପାଷାଣ ତୋରଣ ପାଖେ ସୂର୍ଯ୍ୟାସ୍ତ
ସେତେବେଳେ ଦାଉ ଦାଉ ହୋଇ ଜଳୁଛି ।

ଏଇ ଭୀଷଣ ରକ୍ତାକ୍ତ ଗୋଧୂଳିରେ
ଆମର ଦୂରତ୍ୱ ଏକ ଅଳୀକ ସନ୍ଧ୍ୟା ରଚନା କରିଛି ।
ପ୍ରତୀକ୍ଷା, ନୀଳ ପ୍ରଜାପତି ଭଳି
ଉଡ଼ିଯାଇ ବସୁଛି ତୁମ ଓଠ ଉପରେ ।
ଆଉ, ମୋ ଗୋଡ଼ତଳେ କବିତା ପରି ବିସ୍ତୀର୍ଣ୍ଣ
ଘାସର ବିଛଣା, ଶିହରି ଉଠୁଛି ବାରମ୍ବାର ।

ଗତି ଯଦି ମରିଯାଏ,
ମୁଁ ତାକୁ ନେଇ ଯିବି ହାତ-ଟଣା ରିକ୍‌ସାରେ
ଦୁଃଖର ଖାନନଗରକୁ ।
କ୍ରନ୍ଦନ ଯଦି ମରିଯାଏ,
ତୁମେ ଆଉ ଖୋସିବନି ଚମ୍ପାକଢ଼ ଗଭରେ ତୁମର ।

ଏ ସହରର ନାମହୀନ ଅଜଣା ଛକରୁ
ଧ୍ୱଂସ ପରି ରାସ୍ତାସବୁ ଲମ୍ବିଛନ୍ତି ମଶାଣି ଆଡ଼କୁ ।
ଅଶ୍ରୁ ପତନର ଶବ୍ଦ ଶୁଣିବାକୁ ଖରି ଇଚ୍ଛା ହୁଏ,
ତୁମର ସ୍ନେହର ଘ୍ରାଣ ମୃଗନାଭି ପରି ମହକୁଛି ।



□□□

Digitized by PPRACHIN, SOA

# ଚାଲିଯିବି

ମୃତ୍ୟୁ ଆସି ଠିଆ ହେଲେ
ଦୁଆର ଆଗରେ ଅକସ୍ମାତ୍,
ସେ ହୁଏତ ଭାବିଥିଲେ,
ମୁଁ ବିଛଣାରେ ଗଡ଼ୁଥିବି
ଗୋବର-ଗଣେଶ ପରି
ଇତସ୍ତତଃ ତକିଆ ମେଳରେ ।
ଅଇନାରୁ ଝୁଲୁଥିବ
ବୁଢ଼ୀଆଣୀ ଜାଲ ।

ମୁଁ ତାଙ୍କୁ ନେଇଗଲି ହାତଧରି ଡ୍ରଇଂ ରୁମ୍‌କୁ,
ପଚାରିଲି— ଶୁଣିବେ କି ବେଗମ୍ ଅଖ୍‌ତାର ?
ଧୂପର ଧୂଆଁ ପରି ସର୍ପିଳ
ଗଜଲର ସ୍ୱର,
ବେଢ଼ି ବେଢ଼ି ଉଠୁଥିଲା
ମେହଗନୀ ଆଗମ ଚଉକି,
ସେଦିନ ନଥିଲା ସେଠି ଦୁଃଖ ପରି
ସନ୍ତ୍ରସ୍ତ ପ୍ରହରୀ ।

ଛୁଆସବୁ ଗୋଲ ହୋଇ ବସିଥିଲେ
କାଠ-ଚମ୍ପା ଗଛ ତଳେ
ସେତେବେଳେ, ସଭା କରିବାକୁ,
ଅଚିହ୍ନା ଚଢ଼େଇଟିଏ
ସାନ ସାନ ଥଣ୍ଟରେ ତାହାର
ଖୁମ୍ପୁଥିଲା ଫୁଲର ପରାଗ—



Digitized by PPRACHIN, SOA

ପୋଖରୀ ହୁଡ଼ା ପାଖ ସଜନା ଡାଳରୁ
ଝୁପ୍ କରି ମାଛରଙ୍କା ପଡ଼ିଲା ପାଣିରେ
କବିତାର ଶେଷଧାଡ଼ି ପରି ।

ରହିଛି ସୌରଭ ଲଖି ଏବେ ବି,
ମାୟାବୀ ରେଶମୀ ରୁମାଲରେ,
ଆଲମାରୀରେ ପରସ୍ତ ପରସ୍ତ
ମାଣିଆବନ୍ଧି ଯୋଡ଼ର ଫାଙ୍କରୁ,
ଗଡ଼ି ଗଡ଼ି ଆସୁଅଛି ଅତି ଧୀରେ
ବର୍ତ୍ତୁଳ ସ୍ଫଟିକ-ଶୁଭ୍ର
ଗନ୍ଧ କରପୂର,
ସବୁଅଛି ଠିକ୍‌ଠାକ୍ ନିଖୁଣ ଚଳଚ୍ଚିତ୍ର ପରି ।

ପରସ୍ତ ରୌଦ୍ରର ତାପ
ବିଛଣାରୁ ପୋଛି ଦେଇ
ସବୁଦିନ ପାଇଁ
ତୁର୍କୀ ତଉଲିଆ ଆଉ ଚନ୍ଦନ-ସାବୁନ,
ଛାଡ଼ିଦେଇ ଠଣାରେ
ଗାଧୁଆ ଘରର,
ଗ୍ଲଲିଯିବି ଡାକ ଶୁଣି ତାର,
ଯିଏ ମୋତେ ଖୋଜିଅଛି,
ଅନିବାର୍ଯ୍ୟ ଦିନଗତି ଧରି ।

□ □ □



Digitized by PPRACHIN, SOA

୬ ୯

## କେତେ ଦିନ

କେତେ ଯୁଗ, ଆଉ କେତେ ବର୍ଷ,
ବଞ୍ଚିବାକୁ ହେବ,
ଆଉ କେତେଦିନ, ଦଣ୍ଡ, ପଳ, ଅନୁପଳ,
ଅଭିନୟ କରିବାକୁ ହେବ ବଞ୍ଚିବାର ?

କୁକୁର, ବିଲେଇ, କିମ୍ବା
ପିଞ୍ଜରର ଶୁକ ପରି
ବଞ୍ଚିବାର ବଞ୍ଚନାରେ ସମସ୍ତେ ବିତାନ୍ତି,
ମାଟିତଳେ ସାଲୁବାଲୁ
ମେଞ୍ଚେ ଜିଆନାଳ ଭଳି
ଅଡ଼ୁଆ ସମୟ ।

କିନ୍ତୁ,
କିମ୍ବଦନ୍ତୀ ଭିନ୍ନ କଥା କହେ --
ସମୁଦ୍ର ଆଗରେ ଆସି ଯେଉଁଦିନ ଠିଆ ହେଲି,
ଉଛଳ ଢେଉରୁ କୁଦି ମୋର ଶୈଶବ,
ଡିଆଇ ଦେଇ ଆସି ମଠ ପଞ୍ଝାବୀକୁ,
ହାତ ଧରି ଟାଣିନେଲ ଅଗାଧ ପାଣିକୁ ।



Digitized by PPRACHIN, SOA

ମନେ ପଡ଼େ ଯେଉଁଦିନ ଶାଳ ଜଙ୍ଗଲରେ
ଭେଟିଥିଲି କୃଷ୍ଣସାର ମୃଗ
ସେ କିନ୍ତୁ ବାରମ୍ବାର ଉଦ୍ୟତ ଶିଙ୍ଘରେ
ଛନ୍ଦକୁ ଭୂଷିବାକୁ ଚେଷ୍ଟା କରିଥିଲା ।

ପବନ ବାହାରିଗଲା ଭୁସ୍ କରି,
ରଙ୍ଗିନ୍ ବେଲୁନ୍
ହୋଇଯାଏ ନୁଡୁପୁଡୁ ନରମ ରବର,
ବିବର୍ଣ୍ଣ ମାଂସର ଗନ୍ଧ
ଭରିଦିଏ ସମଗ୍ର ଗୋଧୂଳି ।

□ □ □



Digitized by PPRACHIN, SOA

## ସ୍ୱପ୍ନ

ଆଜିକାଲି ଶେପରେ ଶୋଇବାକୁ ଭରି ଡର ମାଡ଼େ,
ଶୋଇବାକୁ ଡର ମାଡ଼େ ବିଛଣା ନରମ ହେଲେ ବି
ଆଜିକାଲି ।

ଡର ମାଡ଼େ ସ୍ୱପ୍ନ ଦେଖିବାକୁ,
ଆଜିକାଲି ସ୍ୱପ୍ନମାନେ ମୂଳତଃ ବିଶ୍ୱାସଘାତକ ।
ସେମାନେ ବାଛି ବାଛି ହାଜର କରନ୍ତି
କଟକର ଗଳିସବୁ
ମୋ ସ୍ୱପ୍ନ ଭିତରେ ।

ଏ ସବୁ ଅମୋଘ ଗଳି
ଧୀରେ ଧୀରେ ସ୍ମୃତି ପରି
ମୋତେ ଆସି ବେଷ୍ଟନ କରନ୍ତି ଆବେଗରେ ।
ଯେଉଁଠି, ଘରମାନେ ଘନିଷ୍ଠ ଭଙ୍ଗୀରେ
କାନ୍ଧ ଉପରେ ଝୁଙ୍କି ପଡ଼ି ପରସ୍ପର
ମାତିଥାନ୍ତି ପ୍ରଗାଢ଼ ଗପରେ ।



Digitized by PPRACHIN, SOA

ଏଠି ନିତି ଘଟି ହେଲେ
ଜହ୍ନ ଆସେ ଜମାଦାର ଭଳି
ମ୍ୟୁନିସିପାଲିଟିର,
ତନଖି କରିବାକୁ,
ଅଳିଆ ଗଦାର ଜଞ୍ଜାଳ ଉପରେ ବସି
ଦମ୍ ମାରେ, ବିଡ଼ି ଟାଣେ ଅନ୍ତରଙ୍ଗ ଠାଣିରେ କିଛି ବେଳ ।

ଭଙ୍ଗାଟିଣ, ଆଳୁଚୋପା, କନା-ବିଣ୍ଡା,
ଅଣ୍ଡାର ଖୋଳପା ଆଉ ଦରଛିଣ୍ଡା ବକ୍ଷ-ଆବରଣୀ,
ଡାଳିପକା ଯୋତା,
ପାଖେ ପାଖେ ପଡ଼ିରହେ
ପ୍ଲାଷ୍ଟିକ୍ କଣ୍ଢେଇର ଭଙ୍ଗା ହାତ-ଗୋଡ଼,
ଜହ୍ନ ଆସି ଦେଖିଯାଏ
ଚୀହାତ୍ ବିଗଢ଼ିର ଶବ
ଅମୁହାଁ ଗଳିରେ ।

ରକ୍ତ ପରି, ବୀଜମନ୍ତ୍ର ପରି
ମୋ ଦେହର ଶିରା ଭରି
ବହିଯାଏ କଟକ ଗଳିର ବାସ୍ନା
ଛାଇ ଛାଇ ଅନ୍ଧାର ଭିତରେ ।
ପାନପିକର ପାରସ୍ୟ ଗାଲିଚ୍ଛା ମାଡ଼ି,
କୁକୁରଙ୍କ ବାର୍ଦ୍ଧି-ପାଇ ଶେଷ ହେବା ପରେ,
ସ୍ୱପ୍ନ ମୋତେ ଭିଡ଼ି ନିଏ
ଖୋଲା ନାଳ ମହକ ଆଡ଼କୁ ।

□ □ □



Digitized by PPRACHIN, SOA

# ଦ୍ୱୀପ

କାଲି ରାତିରେ ମୋର
ସ୍ୱପ୍ନ ଦେଖିବାର କଥା ଥିଲା,
କିନ୍ତୁ ଦେଖି ନାହିଁ ।
ଆଜିକାଲି ସ୍ୱପ୍ନମାନେ ଜଳଜଳ ଉର୍ଦ୍ଦିଦ,
ଆଙ୍ଗୁଠିର ଫାଙ୍କ ବାଟେ ଗଳି ପଳାନ୍ତି ।

ମୁଁ କିନ୍ତୁ ଚାହିଁଥିଲି,
ଯିବାକୁ ସେହି ଅଲୌକିକ ଦ୍ୱୀପକୁ,
ଯେଉଁଠି ସବୁଜ ରଙ୍ଗର ଢେଉ ସବୁ
ଅନାବିଳ ଶୁଭ୍ର ବାଲି ଉପରେ ଆସି
ଡୁ-ଡୁ ଖେଳନ୍ତି ।
ସ୍ୱପ୍ନର ହାତ ଧରି ପହଞ୍ଚିବାକୁ
ସେହି ଦାରୁଚିନି ଦ୍ୱୀପରେ
ମନ ଥିଲା ।
ଇଚ୍ଛା ଥିଲା ପ୍ରବାଳ, ଶଙ୍ଖ, ଆଉ ଶାମୁକା ମେଳରେ
ମତ୍ସ୍ୟକନ୍ୟାର ଲବଣାକ୍ତ ଜାନୁ ଉପରେ ଶୋଇ
ସ୍ୱପ୍ନ ଦେଖିବାକୁ ।



Digitized by PPRACHIN, SOA

ଏଠି ଗତି ଓହ୍ଲାଇ ଆସେ
ତିମି ମାଛର ଜଠର ଭିତରୁ ।
ଦୂରର ନକ୍ଷତ୍ର ସବୁ ଜଳୁଥାନ୍ତି
ଅସରନ୍ତି ବର୍ଣ୍ଣମାଳା ପରି ।
ଆଉ ସିନ୍ଧୁ-ସାରସର ଡେଣାରୁ
ଝରି ପଡ଼େ ନୀଳାଭ ବେଦନା ।

ବିସ୍ତୀର୍ଣ୍ଣ ତୃଣଭୂମି ଡେଇଁ
ଦିଗଭ୍ରଷ୍ଟ ନାବିକ ପରି
ପହଞ୍ଚିବି ଲବଙ୍ଗ ବଣରେ ।

ସେତେବେଳେ କେହି ଜଣେ ନାରୀ
ମୋ ଲାଗି ପ୍ରତୀକ୍ଷା କରୁଥିବ,
ଖୋଲି ଦେଇ ଶ୍ରାବସ୍ତୀର ଅନ୍ଧକାର ପରି
ଅଜସ୍ର କୁନ୍ତଳ ।
ସେ ହୁଏତ ପଚାରିବ, ନିଦାଘରେ ସ୍ନିଗ୍ଧ ଛାଇ ପରି
ଆଖି ରଖି ମୋ ଆଖି ଉପରେ
ଏତେ କାଳ କୁଆଡ଼େ ବା ଥିଲ
ଭଇଁଲାଗେ ବ୍ୟକ୍ତିଗତ ନିଃସଙ୍ଗ ପ୍ରହର ?"

ସେତେବେଳେ ଆକାଶର ପଡିଆରେ
ଭସି ଭସି ଝୁଲୁଥିବ
ଅପାର୍ଥିବ ଚନ୍ଦ୍ର ଏକ
ପରିତ୍ୟକ୍ତ ଫୁଟ୍‌ବଲ୍ ଭଳି ।

□ □ □



Digitized by PPRACHIN, SOA

## ସ୍ୱୀକାରୋକ୍ତି

ତୁମ ଓଠରୁ ଆଜି ବିଷଣ୍ଣ ଫୁଲର ଛାଇ
ପୋଛି ଦେବି ନିର୍ଲଜ ହାତରେ;
କାଢ଼ି ନେବି ସବୁ ପବିତ୍ରତା ଅଲଗ୍ନ ବାକରୁ
ଜଙ୍ଗଲ ପଶି ଆସିଛି ଘର ଭିତରକୁ
ଧର୍ଷିତା କୁନ୍ଥ ଏକ ପଡ଼ି ରହେ ବିଛଣା ଉପରେ ।

ତୁମେ ମତେ ଚଖାଇଛ
ଲୁଣିଆ ରକ୍ତରେ କେତେ ମାଦକତା ଅଛି
ଚିହ୍ନାଇଛ ମୋତେ ତୁମେ ଅନ୍ଧାରର ଶରୀରରେ
ଲୁଚି ଛପି ରହିଥିବା ଅଗଣିତ ଖାଲ-ଢିପ,
ଅରମାର ଗୋପନ ସୁଡ଼ଙ୍ଗ,
ଶିଖାଇଛ ଶୁଣିବାକୁ କାନ ଡେରି
ଆଶ୍ଚର୍ଯ୍ୟ ଘଣ୍ଟାଧ୍ୱନି
ଧମନୀରୁ କେତେବେଳେ ଉଚ୍ଚାରିତ ହୁଏ,
ନିଃଶ୍ୱାସର ଯେତେକ ସଂକେତ,
ଆଖିର ନୀରବ ଭଷା
ପଢ଼ି ପାରେ ଅନାୟାସେ ଆଜି,
ଏ ସବୁ ତ ତୁମରି ତାଲିମ !



Digitized by PPRACHIN, SOA

ମୁଁ ଜାଣିଛି ବାଘ ପଞ୍ଝା ଚିରିବାକୁ ଛାତିର ରହସ୍ୟ,
ହୃତ୍‌ପିଣ୍ଡ କେତେବେଳେ ତାଡ଼ି ହୁଏ
ନିର୍ମମ ନଖରେ ।
ଅସ୍ଥି-ମଜ୍ଜାର ସ୍ୱାଦ ଜିଭରୁ ମରିବା ଆଗରୁ
ଅଭୀଷ୍ଟ କ୍ଷତରୁ ଉଠେ କଳରବ
ହାହାକାର ପରି ।

ନିଆଁ ଲଗେ ବନସ୍ତରେ,
ପୋଡ଼ିଯାଏ କୋଇଲିର ସବୁ କୋଳାହଳ,
ମୁହୂର୍ତ୍ତ ଭିତରେ ।
ଇତସ୍ତତଃ ପଡ଼ିରହେ କାକରର ଶବ
ଗଦାଗଦା ପାଉଁଶ ଉପରେ ।

ଗଛ କାହିଁ ଶାଳ ବା ମହୁଲ,
ବାଘ କାହିଁ ? ବାଘ ନାହିଁ,
ଜନ୍ତର ଦେହକୁ ଘ୍ରାଣେ
ଲୁଚି ଲୁଚି ଭୟାର୍ତ୍ତ ଶୃଗାଳ,
ବାହାରେ ନକ୍ଷତ୍ରହୀନ ଅନ୍ଧକାର,
କାପୁରୁଷ ପରି ଝୁଲୁଥାଏ ।

□ □ □



Digitized by PPRACHIN, SOA

# ଆମେସବୁ

ଆମେ ସବୁ ପବନକୁ ବାନ୍ଧିବାକୁ
ଚେଷ୍ଟା କରିଥିଲୁ,
ଆମେ ସବୁ ଜୁଆରରେ ଭସିଥିଲୁ,
ଉଜାଣି ସୁଅରେ ମାରିଥିଲୁ କାତ,
ଫଟା ପାଲ ମେଲିଥିଲୁ ଉଦ୍‌ବେଳ ସାଗରେ ।

ଆମେ ସବୁ ଭତ ସଙ୍ଗେ ଖାଇଥିଲୁ ମୁଠା ମୁଠା ଗୋଡ଼ି
ନୋହିଲେ ଓଦାକନା ପେଟରେ ପକାଇ
ଶୋଇଥିଲୁ ଲେଉଟାଇ କଡ଼ ।
ଆମେ ସବୁ ଲଠି ଆଉ କୋରଡ଼ାରେ ବଡ଼ ହୋଇଥିଲୁ,
ନିଃଶ୍ୱାସ ମାରିଥିଲୁ ବାରୁଦର ଘ୍ରାଣ ଶୁଙ୍ଘି ଶୁଙ୍ଘି
ବନ୍ଧୁକ ଅଥବା ବେଡ଼ି, ହାତକଡ଼ି, ବେତ୍ରାଘାତ,
ଘୋଡ଼ାଟାପ, ଗୁଳି ଭଳି ସାନ ସାନ ଚିତ୍ରକଳ୍ପ
ଭରିଥିଲା ଆମର କୈଶୋର ।

ଆମେ ସବୁ ଗୋଧୂଳିରେ ଦେଖିଥିଲୁ ରକ୍ତର ବିମ୍ବ,
ଶ୍ରଦ୍ଧା କରିଥିଲୁ ଆମେ ସେହିସବୁ ବିମ୍ବଙ୍କ ପ୍ରତିମ୍ବ
ଯିଏ ଦିନେ ଖେଳିଥିଲେ ହୋରିଖେଳ ଆପଣା ରକ୍ତରେ ।
ବଡ଼ ହେଉ ହେଉ ଆମ ଫାଟିଗଲା ଠୋ କିନା ସୁଖର ବେଲୁନ,
ଆମେ ପର ଭବିଥିଲୁ ସବୁ ଭେକ ମରିଯିବ ସାଗର ଲୁଣରୁ !

॥ ୫୩ ॥

Digitized by PPRACHIN, SOA

ହେ ବଞ୍ଚିତା ଭାରତବର୍ଷ, ତୁମ ପାଇଁ ଆମେ ଆମର
ପ୍ରେମିକାଙ୍କୁ ଭୁଲିଛୁ ।
ତୁମେ ବିଶ୍ୱାସ କର, ପ୍ରେମ ବେକରେ ଦଉଡ଼ି ଦେଇଛି,
କିମ୍ବା କିରସିନି ବୋଳି ହୋଇ
ଆତ୍ମହତ୍ୟା କରିଛି ବହୁଦିନୁ ।
ସାରଦେଶ ଭରିଯାଇଛି ଅଗଣିତ କୁଷ୍ଠ ରୋଗୀରେ ଆଜି,
ଶଠତା ଆଉ ଲାଞ୍ଚ ପରି ଦୂଷିତ କ୍ଷତରୁ
ପୂଜ ଓ ଦୁର୍ଗନ୍ଧ ଅନବରତ ଝରୁଛି ।

ଆମେ ସବୁ ଭୁଲିଯାଇଛୁ ବାଟ,
ଭାରତବର୍ଷର ମାନଚିତ୍ର ଭରି ଯାଇଛି ଖାଲି
ଚୌମୁହାଁଣି ଓ ଗୋଲେଇ ଛକରେ,
ଆଜିର ଏ ଉଆଁସ ରାତିରେ
ମୁହାଁଇବୁ କୁଆଡ଼କୁ, ପାରୁନାହୁଁ ବୁଝି ।

ଆମ ଚାରିଆଡ଼େ ଆମକୁ ଘେରି ଗୋଲ ହୋଇ
ପଲ ପଲ ଗଧିଆ ଓ ଶାଗୁଣା ଛକି ବସିଛନ୍ତି ।
ନିଃସଙ୍ଗ ଲାଗୁଛି ବଡ଼ ଏହି ଦିଗଭ୍ରଷ୍ଟ ଅନ୍ଧାରରେ,
ଖୁବ୍ ଅସହାୟ,
ଶୈଶବ ପରି କୌଣସି ଅମଳିନ କଣ୍ଢେଇ
ଆଉ ହାତ ପାଖରେ ନାହିଁ,
ଆମେ କଣ ଶେଷକୁ ଜହ୍ନ ପାଇଁ
ଜାଳି କରି ଅନଶନ କରିବୁ ?

□□□



Digitized by PPRACHIN, SOA

# ବିଷ

ଶିବ ଦିନେ ପିଇଥିଲେ ହଳାହଳ,
ନାମ ତାଙ୍କ ନୀଳକଣ୍ଠ ହେଲ,
ଆମେ କିନ୍ତୁ ଜର୍ଜରିତ
ବିଭିନ୍ନ ବିଷରେ ।
ଡରମାଡ଼େ ନିଃଶ୍ୱାସ ନେବାକୁ,
ପବନରେ ବିଷ ଅଛି,
ବିଷ ଅଛି ବୋଲି ସିନା
ଏତେ ନୀଳ ଯମୁନାର ପାଣି !

ନିଜକୁ ବଞ୍ଚାଇବାକୁ ତୁମ ଗରଳରୁ
ବହୁଦୂର ଆସିଅଛି ଚାଲି,
ସ୍ପର୍ଶରେ ବିଷ ଅଛି,
ଏପରିକି ଦୃଷ୍ଟି ସୁଦ୍ଧା ନିଷ୍କଳୁଷ ନୁହେଁ ।
ବିଷ ଝରେ ବୋଲି ପରା ଭ୍ରୂଲତା ବି ଏଡ଼ିକି ତିର୍ଯ୍ୟକ !

ବନ ପୋଡ଼େ,
ସବୁ କିଛି ପୋଡ଼ିଯାଏ,
ଦଗଧ ବନସ୍ପତି ।
ପୋଡ଼ି ଯାଏ ଶୁକ-ସାରୀ,
ଉଡ଼ି ଆଉ ଆସେ ନାହିଁ ନୀଳ ପ୍ରଜାପତି ।
ମନ ବି ପୋଡ଼ିଯାଏ,
ସ୍ମୃତି ପୋତି ହୋଇ ପଡ଼େ ପାଉଁଶ ଗଦାରେ,
ପଡ଼ିରହେ ଇତସ୍ତତଃ ଭଙ୍ଗା କାଚ ଚୁଡ଼ି ।



Digitized by PPRACHIN, SOA

ମୁଣ୍ଡକଣ୍ଟା, ସେଫଟିପିନ୍,
ଏ ସବୁ ବି ବେଳେ ବେଳେ
ହଜୁ ହଜୁ ଅଟକି ଯାଏ
ଛାତିପାଖ ବୋତାମ ଘରରେ ।

ଲୁଣ ଖାଲି ଖାଏ ନାହିଁ ହାଣ୍ଡି,
ଦିନେ ଦିନେ ଚଗଚରେ ମାଡ଼ିଯାଏ ଲୁଣି,
ମରିଯାଏ ସବୁ ଘାସ
ଶୁଖିଯାଏ ଅସଂଖ୍ୟ କୋରକ,
ଦାଢ଼ୁଆ କୁରଢ଼ି ପରି ଉଚ୍ଛ୍ବଳ
ଚେନାଏ ଝର ନିହାତି ଦରକାର
କିନ୍ତୁ କାହିଁ ?
ହିଂସ୍ର ଏକ ଘଡି ଆସି
ଠିଆ ହୁଏ ତାହାରି ଜାଗାରେ ।

ଜହ୍ନ-ବୋଲା ସେହି ଘଡିରେ ହଠାତ୍
ଶିକାରୀ ବାହାରି ପଡ଼େ
ମାରିବାକୁ ହରିଣ ଶିଶୁକୁ ।

□□□



Digitized by PPRACHIN, SOA

# ଫୁଲ

ଫୁଲ ସବୁ ମରିଯିବେ ଦିନେ
ଫୁଲ ଛୁଇଁ ଚଢ଼େଇଟି ଫେରି ଆଉ ଆସିବନି
ପଗଗ ମାଖକୁ ।
ସବୁ ଫୁଲ ଝାଉଁଳିବେ,
ମଉଳିବ ଧୀରେ ଧୀରେ ବର୍ଣ୍ଣମୟ ଗୋଲାପ ପାଖୁଡ଼ା,
ଛାଇ ସବୁ ଲେଉଟିବେ ଗୋଧୂଳିରେ
ଆପଣା ଘରକୁ ।

ସବୁ ନଈ ହଜି ଯିବେ ଦିନେ,
ସାଗରର ନୀଳିମାରେ ବୁଡ଼ିଯିବେ
ଚିରକାଳ ପାଇଁ ।

ସେହି ସବୁ ମୃତ ଫୁଲ,
ସେହି ସବୁ ପଳାତକା ନଦୀ
ଆତ୍ମଘାତୀ ଯେତେକ ଝରଣା,
ବେଳ ହେଲେ ବାହୁଡ଼ିବେ
ନିଜ ଚେର ଖୋଜି ଖୋଜି,
ଜୁଆରରେ ଭସି ଭସି
ପହଞ୍ଚିବେ ନିଶ୍ଚେ ଆସି
ଅଭ୍ରାନ୍ତ ଉତ୍ସରେ ।

□ □ □



Digitized by PPRACHIN, SOA

# ମିଥୁନ ଲଗ୍ନ

ଗ୍ଭଲ ଯିବା ବାଟ ଭୁଲିବାକୁ,
ଗ୍ଭଲ ଯିବା ବାଟ ହୁଡ଼ିବାକୁ,
ଗ୍ଭଲ ଯିବା ହଜିବାକୁ ଅମୁହାଁ ଗଳିରେ ।

ଆମ ଦୁହିଁଙ୍କୁ ସମୁଦ୍ରର ଢେଉମାନେ ଉଣ୍ଡୁଛନ୍ତି,
ଝାଉଁ ଜଙ୍ଗଲର ଫାଙ୍କବାଟେ
ଜହ୍ନ ବି ।
ଅଜଣା ଚଢ଼େଇର ଉଦାସ ଚିତ୍କାର
ରାତିର ଦେହକୁ କାଟି ଖଣ୍ଡ ଖଣ୍ଡ କରୁଛି ।
ଦୂରରେ ନକ୍ଷତ୍ରମାଳା ଗ୍ଭହିଁଛନ୍ତି ଭର୍ତ୍ସନାର ଭଙ୍ଗୀରେ ।

ମନ୍ଦିରର ମିଥୁନ ମୂର୍ତ୍ତିଙ୍କୁ ପଗ୍ଭରିବା
ତାଙ୍କର ପରିଚୟ ।
ସେମାନେ କଣ ସୁଖୀ ଥିଲେ
ରତି-ନିପୁଣ ଥିଲେ ଭୟାନକ ?
ପବନରେ ସେମାନଙ୍କ ଯୋନିର ଘ୍ରାଣ ଭସି ଆସୁଛି ।



Digitized by PPRACHIN, SOA

ଦିଗନ୍ତକୁ ଆଉଜି ନ୍ୟୁବ୍‌ଜ ହୋଇ ଠିଆ ହୋଇଛି
ପ୍ରୌଢ଼ ଅନ୍ଧକାର,
ଗରମ ପାରଦ ସ୍ରୋତ ଗ୍ରାସ କରୁଛି ଚରାଚର,
ଆମ ଦୁହିଁଙ୍କୁ ବି ।
ଚନ୍ଦ୍ର କରେଟି ତଳେ ଜାଗି ରହିଛନ୍ତି
ଅସଂଖ୍ୟ ଶଙ୍ଖଚୂଡ଼,
ସେମାନେ ସମୁଦ୍ରର ଅତିକାୟ ଜରାୟୁ
ବିଦୀର୍ଣ୍ଣ କରି
ଉଡ଼ିଯିବେ ମୁକ୍ତ ଆକାଶ ଆଡ଼କୁ ।

ମୋର ସମଗ୍ର ଶୁକ୍ର ଶୁଖି ଯାଉଛି,
ମୁଁ ତୁମକୁ ଚିତ୍କାର କରି କହିବାକୁ ଚାହେଁ
ମୃଗଶିର ନକ୍ଷତ୍ରରେ ଝଡ଼ ଉଠୁଛି ଦେଖ,
ମୋର ଆତଙ୍କ ସବୁ ଉଡ଼ି ଯାଉଛି
ଛିନ୍ନ ପତ୍ର ଭଳି ଦୂର ମୁହାଁଣକୁ ।
ମୋ ଦେହକୁ ସଞ୍ଜୀବୀତ କର ଧୋଇ ଧୋଇ
ତୁମ ହୃଦୟର ଉଷ୍ଣ ଶୋଣିତରେ ।

□ □ □



Digitized by PPRACHIN, SOA

# ଛାଡ଼ିଯିବି

ମୁଁ ତୁମକୁ ଛାଡ଼ିଯିବି ଦିନେ,
ଯେମିତି ସାଗର ଢେଉ
ଚାଲିଯାଏ ଛାଡ଼ିଦେଇ
ବେପଥୁ ସାଗର ବେଳାକୁ ।

ଛାତିର ସେ ଲାଲିଙ୍କାଇ,
ଭ୍ରୂଲତା ଓ ଆଖିର ପଲ୍ଲବ,
ଓଦା ଓଠ ଭୁଲିଯିବ ତୁମ ।
ଯେପରି ହେମନ୍ତ ଭୁଲେ
ସାପକାତି, ଜହ୍ନରାତି, ଅଣ୍ଡାର ଖୋଳପା,
ଆଉ ଗର୍ଭିଣୀ ଧାନ କିଆରୀକୁ ।

ଶୁଖିଲା ପତର ସବୁ ଝଡ଼ିପଡ଼େ,
ମଳ ସ୍ମୃତି କ୍ରମେ ଆସି କୁଢ଼ ହୁଏ
ଗଛର ମୂଳରେ ।
ଜଳର ନାଭିରେ ଖେଳେ ଜହ୍ନ ଏକ
ଗଜହଂସ ପରି ।



Digitized by PPRACHIN, SOA

ମୁଁ କିନ୍ତୁ ଶୋଇରହେ
ପାଣିର ଦେହକୁ ଛୁଇଁ ଚୁପଚାପ
ଅଳସ ଭଙ୍ଗୀରେ ।
ଗୋପନ ଇଚ୍ଛାସବୁ ସାନ ସାନ
ମାଛ ପରି ଡେଉଁଥାନ୍ତି ଅଗାଧ ପାଣିରେ ।

ଏମିତି ଅନେକ ରାତି କଟିଅଛି ମୋର,
ଜଙ୍ଗଲରେ ସୁଖ ଅଛି,
ସୁଖ ଅଛି କଦମ୍ବ ଡାଳରେ ।
ବହୁକାଳରୁ ଏ ବଣକୁ ଆସିନାହିଁ ବାଘ,
ତଥାପି ରହିଛି ଭୟ, ଅନ୍ଧକାର ଅଛି,
ତୀବ୍ର ଆକର୍ଷଣ ଅଛି ଶାଖା-ପ୍ରଶାଖାର ।

ଏ ସବୁକୁ ମାନିନେଇ
ଝିଙ୍କାରୀର ପ୍ରଚାଣ୍ଡ ଗର୍ଜ୍ଜନରେ
ମର୍ଜ୍ଜିବାକୁ ଭାରି ମନ ହୁଏ,
ହରିଣୀର ଡାକ ଶୁଣି
ହଠାତ୍ ଚମକି ଦେଖେ
ପାଣି ଛାଡ଼ି ଢଙ୍କ ଯାଇ
ଚଢ଼ିଅଛି ଭୂତ ପରି ଅଶ୍ୱତ୍ଥ ଡାଳରେ ।

□ □ □



Digitized by PPRACHIN, SOA

# ମା

ମା ତୋର ମଳିନ ମୁହଁ
ଦେଖିନାହିଁ କେତେ ଯୁଗ ହେଲା !
କେତେ ଦିନୁଁ ପାଇନାହିଁ
ନିର୍ଜନ ମହକ ତୋ ଦେହର,
ଓଦା ଗୋଲାପର ପାଖୁଡ଼ା ପରି ଦ୍ରବ ।
ତୁ କଣ ମୋ ଲୁହ ଆଉ
ପୋଛିବୁନି ତୋ ସ୍ନିଗ୍ଧ କାନିରେ ?

ପୃଥିବୀରେ ଭୟଙ୍କର ପବନର
ଅଭାବ ଆଜିକାଲି,
ଅଥଚ ସନ୍ଧ୍ୟା ହେଲେ
ସମସ୍ତେ ବାହାରନ୍ତି ହାହାକାର ଖୋଜି
ମଉଳା ଇନ୍ଧ ଆଲୁଅରେ ।
ରକ୍ତ କିନ୍ତୁ ଝରୁଥାଏ
ଅବିରତ ସ୍ମୃତିର କ୍ଷତରୁ ।
ଫୁଲରୁ ଶୁଖିଯାଏ ମହୁର ଅନ୍ତିମ ଟୋପା,
ପୁରୁଷ ଆଉ ଟିକେ ସନ୍ଦେହ କରେ
ଆପଣା ନାରୀକୁ କେବଳ ।

ମୁଁ ଆଜି କରିଛି ଖୁନ୍
ମୋହମୟ ନୀଳ ମହୁମାଛି,
ଶୈଶବକୁ ଫିଙ୍ଗି ଦେଇଛି
ଭଙ୍ଗା କଣ୍ଢେଇ ପରି
ଦୂର ଖଡଗଦାକୁ ସଶବ୍ଦରେ ।



Digitized by PPRACHIN, SOA

ଆଜି କିନ୍ତୁ ଇଚ୍ଛା ହୁଏ
ପୁଣି ମୋର ମୁହଁ ଥୋଇ
ତୋ ରିକ୍ତ ସ୍ତନରେ
ମା ବୋଲି ଡାକିବାକୁ ଥରେ ।

କର୍ଫି କପ୍‌ରେ ଦେଖା ଦେଇଛି ଦାଗ,
ଓଠ ଆଉ କପ୍ ଭିତରେ ବ୍ୟବଧାନ
କ୍ରମଶଃ ଦୀର୍ଘତର ହେଉଛି ।
ପ୍ଲେଟ୍‌ରେ ବିଛାଡ଼ି ହୋଇ ପଡ଼ିଛି
କାପୁରୁଷ ପରି ଚିନିର ଗୁଣ୍ଡ ଇତସ୍ତତଃ ।

ମେଘ ଆଜି ପିନ୍ଧିଛି ପରଚୂଳା
ଝୋଟ ଭଳି ଧଳା
ଅଜସ୍ର ତୋରି ଅଲଗ ବାଳକୁ ।
ତୋରି ବଙ୍କୁଲି ବାଡ଼ି ଆକାଶରେ
ସପ୍ତର୍ଷି ହୋଇ ଜଳୁଛି ।

ତୁ କିନ୍ତୁ ଛାଡ଼ିଯାଇଛୁ
ଶୋଇବା ଘର ଠଣାରେ
ତୋର ସୁନେଲି ଫ୍ରେମ୍‌ର ଚଷମା,
ଆଉ ସିଡ଼ି ପାଖେ ଗାଧୁଆ-ଚଟିକୁ,
ଯେଉଁଥିରେ ଧୂଳି ଜମୁଛି
ପରସ୍ତ ପରସ୍ତ ଆଜି ବି ।

□ □ □



Digitized by PPRACHIN, SOA

## ନଈ ଆର ପାରି

କାନ୍ଥରେ ଝୁଲୁଥିବା ଛବି ପରି ନଈ ଆର ପାରି
ରହସ୍ୟର କୁହୁଡ଼ିରେ ମ୍ଳାନ,
କେହି ଜଣେ ଆଙ୍କିଅଛି ନୀଳିମାରେ
ବୁଢ଼ାଇ ବୁଢ଼ାଇ ପାହାଡ଼ର ଧାଡ଼ି
ଦୂରର ଅଶ୍ୱତ୍ଥ ଡାଳେ ଶୁଖୁଅଛି ଦ୍ରୌପଦୀର ଶାଢ଼ୀ ।

ତରୁଣୀ କଦମ୍ବ ପାଖେ ଭେଟିବାକୁ ପ୍ରତିଶ୍ରୁତି ଥିଲା
କଥା ଥିଲା ନଈଠାରୁ ଶିଖିବାକୁ କୋମଳ ଗାନ୍ଧାର,
ତୋଳିନେବି କୁହୁ ଧ୍ୱନି ପ୍ରଚ୍ଛନ୍ନ କୋଇଲି କଣ୍ଠରୁ,
ଜହ୍ନ ପାଇଁ ବିଛାଇବି ହୃଦୟରେ ଜରିର ଚଦର ।

ଏ ପାରିରେ ଇନ୍ଦ୍ରଧନୁ ମରିଯାଏ ଏକୁଡ଼ିଶାଳରେ,
ମଣିଷର କ୍ଷୁଧା, କ୍ଷୋଭ, ଆଉ ଯେତେ ପୁରାତନ ପାପ,
ଚଣ୍ଡି ଚିପି ରୁନ୍ଧିଦିଏ ଘନିଷ୍ଠ ଛାଇକୁ ବାରମ୍ବାର,
ଏ ପାରିରେ ଝୁରୁଥାଏ ଏକାକୀ ଚକୋର ।

ସେ ପାରିରେ ଯେତେ ସ୍ୱପ୍ନ,
ପ୍ରତ୍ୟାଶାର ହାତ ଧରି ଗ୍ଲିଯିବି ଦିନେ ଆରପାରି,
ଦିଗ୍‌ବଳୟରୁ ବୋଳି ହେବି ମୁଠାମୁଠା ମାୟାବୀ ଅବିର,
ଠିକ୍ ଯାଇ ପହଞ୍ଚିବି ଚନ୍ଦନ ବନରେ,
ଯେଉଁଠାରେ ବସିଥିଲେ ଏକଦା ଈଶ୍ୱର ।

□□□



Digitized by PPRACHIN, SOA



ଭାନୁଜୀ ରାଓଙ୍କ ଜନ୍ମ: ୧୯୨୬ ମସିହାରେ, ନଭେମ୍ବର ୩ ତାରିଖରେ। ଜନ୍ମସ୍ଥାନ: କଟକ ସହର। ଭକ୍ତକବି ମଧୁସୂଦନଙ୍କ ଦ୍ୱିତୀୟପୁତ୍ର ସ୍ୱର୍ଗତ ପ୍ରଶାନ୍ତ ରାଓଙ୍କର ସେ କନିଷ୍ଠ ସନ୍ତାନ।

ଦୀର୍ଘକାଳ ଧରି ଓଡ଼ିଆ ସାମ୍ବାଦିକତା ସହିତ ସେ ସଂପୃକ୍ତ ରହି ଆସିଛନ୍ତି– ୧୯୬୯ ମସିହା ପର୍ଯ୍ୟନ୍ତ। ତା'ପରେ ମସୌରୀସ୍ଥିତ ଲାଲବାହାଦୁର ଶାସ୍ତ୍ରୀ ପ୍ରଶାସନିକ ଆକାଦେମୀରେ ସେ ହୋଇଛନ୍ତି ଭାଷାଶିକ୍ଷକ। ସେଠାରୁ ଅବସର ନେଲା ପରେ ସେ ଏବେ ରହୁଛନ୍ତି କଟକରେ, କାଳିଗଳିସ୍ଥିତ ତାଙ୍କ ନିଜ ବାସଭବନରେ।

ଆଧୁନିକ ଓଡ଼ିଆ କବିତାରେ ତାଙ୍କର ବିଧିବଦ୍ଧ ମଞ୍ଚପ୍ରବେଶ ଘଟେ– ୧୯୫୫ ମସିହାରେ, 'ନୂତନ କବିତା'ର ଜଣେ ବିତର୍କିତ ବ୍ୟକ୍ତିତ୍ୱ ଭାବରେ। ୧୯୭୩ରେ ତାଙ୍କର ପ୍ରଥମ କାବ୍ୟକୃତି 'ବିଷାଦ ଏକ ଋତୁ'ର ଆତ୍ମପ୍ରକାଶ। ୧୯୮୬ ମସିହାରେ ପ୍ରକାଶିତ ତାଙ୍କର ଦ୍ୱିତୀୟ କାବ୍ୟକୃତି 'ନଈ ଆରପାରି' ପାଇଁ ସେ କେନ୍ଦ୍ର ସାହିତ୍ୟ ଆକାଦେମୀ ଦ୍ୱାରା ପୁରସ୍କୃତ।

ଆଧୁନିକ ଓଡ଼ିଆ କବିତାର ସେ ଏକ ସ୍ୱତନ୍ତ୍ର କଣ୍ଠସ୍ୱର। କ୍ରମ ମଧ୍ୟରେ ଏକ ବ୍ୟତିକ୍ରମ। ନଈ ଆରପାରିର ନିଆରା ନାଉରୀଟିଏ ପରି ଏକାନ୍ତ ଏକାକୀ। ଆଧୁନିକମାନଙ୍କ ମଧ୍ୟରେ ସେ ହେଉଛନ୍ତି ସେଇ ଧ୍ରୁପଦୀ-ପୁରୁଷ, ଯିଏ ନିଜର ନିଃଶବ୍ଦତାକୁ ସଜାଇ ଦେଇପାରନ୍ତି, ସାର୍ଥକ ଶବ୍ଦମୟତାରେ.... ନାନା ରଙ୍ଗରେ ଫୁଟାଇ ଦେଇପାରନ୍ତି ଜୀବନର ବିଭିନ୍ନ ବିଚିତ୍ରତାକୁ! ତାଙ୍କ କାବ୍ୟ ଜଗତ ତେଣୁ ଏକ ବିରାଟ ବ୍ୟାପକ ବିଶ୍ୱ। ପ୍ରତ୍ୟେକ ପରିସର ପ୍ରତୀକମୟ। ଚତୁର୍ଦ୍ଦିଗ ଚିତ୍ରକଳ୍ପମୟ।

Digitized by PPRACHIN, SOA